# ଅବ୍ୟକ୍ତ ପ୍ରତୀକ୍ଷା

ଶ୍ରୀ ସରୋଜ ମିଶ୍ର

ପ୍ରକାଶକ



କଟକ-ଷ୍ଟୁଡେଣ୍ଟସ୍ ଷ୍ଟୋର

# ଅବ୍ୟକ୍ତ ପ୍ରତୀକ୍ଷା

ପ୍ରକାଶକ :
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର
କଟକ-୭୫୩ ୦୦୨

ମୁଖ୍ୟ ଉପଦେଷ୍ଟା :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରଥମ ସଂସ୍କରଣ : ୨୦୦୦
ଦ୍ୱିତୀୟ ସଂସ୍କରଣ : କାଳୀପୂଜା, ୨୦୦୭

ମୁଦ୍ରଣ :
ସାଫେକ୍ସ ଇଣ୍ଡିଆ କମ୍ୟୁନିକେଶନ ଓ
କ୍ୱିକ୍ ପ୍ରିଣ୍ଟର୍ସ, କଟକ

ମୂଲ୍ୟ :
ବନ୍ଧାଇ ଟ. ୪୫.୦୦ ମାତ୍ର
ସାଦା ଟ. ୪୦. ମାତ୍ର

# ABYAKTA PRATIKHYA

Publisher :
Sri N. P. Misra
Cuttack Students' Store
Balubazar

Cuttack–753 002

Principal Adviser :
Sri R. P. Misra

First Edition : 2000
Second Edition : November, 2007

Printers :
Safex (India) Communication and
Quick Printers, Cuttack

Price :

Deluxe : Rs. 45 - 00

Popular : Rs. 40 - 00

# ଉତ୍ସର୍ଗ

ମୋର ଅଗଣିତ ଦର୍ଶକ, ପାଠକ
ଓ ଶ୍ରୋତା ଯେଉଁମାନେ
ଅତି ଅନ୍ତରଙ୍ଗ ଭାବରେ
ମତେ ବୁଝିଛନ୍ତି
ମୋ ଲେଖାକୁ ଆଦର କରିଛନ୍ତି
ସେଇମାନଙ୍କ ହାତରେ
ଏଇ ଦୁଇଟି ନାଟକକୁ

ନାଟ୍ୟକାର

# ନିଜକଥା

ମଣିଷ ସୃଜନଶୀଳ । ତାର ସୃଜନଶୀଳ କଷଟିରେ ନିଜର ମନସ୍ତାତ୍ତ୍ୱିକ ଅକାଂକ୍ଷାକୁ ଯେତିକି ଘଷିମାଜିବ ତାର ସୃଜନର ପଟାଳି ସେତିକି ପଲ୍ଲବୀତ ହେବ । ମହାନାଟୁଆ ବିଶ୍ୱନିୟନ୍ତା, ମଣିଷକୁ ସୃଷ୍ଟିକରି ଦୁନିଆ ରଙ୍ଗମଞ୍ଚରେ ଅବତୀର୍ଣ୍ଣ କରି-ଦେଇଛନ୍ତି । ପ୍ରତି ମୁହୂର୍ତ୍ତରେ, ପ୍ରତି ସ୍ପନ୍ଦନରେ ମଣିଷ ଅଭିନୟ କରିଚାଲିଛି । କିଏ କେତେବେଳେ କେଉଁ ଭୂମିକା ନେଉଛି, କହିବା ଯଦିଓ କଷ୍ଟକର, ତଥାପି ନାୟକ, ଖଳନାୟକ, ପାର୍ଶ୍ୱନାୟକ ଇତ୍ୟାଦି ଭୂମିକା ଲିଭାଉ ଲିଭାଉ ଦିନ ଆସେ, ଜୀବନ ଯାତ୍ରାର ମହାନାଟକର ଯବନିକା ନଇଁ ଆସେ । କିନ୍ତୁ ଜନ୍ମ ଆଉ ମୃତ୍ୟୁର ବ୍ୟବଧାନରେ ଯେଉଁ କେତୋଟି ଗୁରୁତ୍ୱପୂର୍ଣ୍ଣ ଅଭିନୟ କରିଥାଏ, ତାହା ସ୍ମୃତି ହୋଇ ରହିଯାଏ ଅନେକ ଆଖିରେ । ସେଇ ସ୍ମୃତିର ଖିଅ ଭିତରୁ ହୃଦୟକୁ ଛୁଇଁ ଯାଉଥିବା ଘଟଣାକୁ ସାଉଣ୍ଟି ଆଣେ ନାଟ୍ୟକାର । ପୁଟ ଦିଏ ନିଜ କଲମ ମୁନରେ, ନାଟ୍ୟକଳାର ନୂତନ ଭଙ୍ଗୀରେ, ଚାତୁରୀରେ, ସୃଜନାତ୍ମକ ନିଜସ୍ୱ ପ୍ରୟୋଗରେ ।

ସୃଜନଶୀଳତାରୁ ସୃଷ୍ଟିହୁଏ କଳା, ସଂସ୍କୃତି, ସାହିତ୍ୟ ଓ ନାଟକ । ନାଟ୍ୟକଳା ନୂଆ କିଛି କୁହେନାହିଁ । ଯାହା କୁହେ, ତାହା ନାଟ୍ୟକାରର ଗଭୀର ଅନୁଭୂତିର ସରହଦରୁ ସଂଗୃହୀତ । ବେଳେ ବେଳେ ଲୋଭରେ ପଡ଼ି ନାଟକଟିଏର ତରବର ପରିବେଷଣ ଲାଗି ନାଟ୍ୟକାର/ନିର୍ଦ୍ଦେଶକ ବ୍ୟାକୁଳ ହୋଇପଡ଼ିଲେ, ନାଟକଟିର ଗୁଣାତ୍ମକମାନ ଉପରେ ପ୍ରଶ୍ନବାଚୀ ଲାଗିଯାଏ । ଏମିତି ଅନେକ ପ୍ରଶ୍ନବାଚୀ ଅଧୁନା ଆମର ସାମାଜିକ ସ୍ଥିତି ଓ ପରିବେଶରେ ଆମ ଦର୍ଶକଙ୍କୁ ମଞ୍ଚ ନିକଟରୁ ଦୂରେଇ ନେଇଛି । ସ୍ୱକୀୟ ଅବଧାରିତ ନୀତି ବଳରେ ଆମେ ନାଟକ କରୁଛେ, ମୁହଁରେ ରଙ୍ଗ ବୋଲି ଦର୍ଶକ ସାମ୍ନାରେ ବାଃ – ବାଃ ନେଉଛେ, ବାହାଦୁରୀର ଅହଂ ନେଇ ବଡ଼ିମା ଯେତେ ନେଲେ ବି ଆପାତତଃ ଆମେ ଗତିମାନ ଅଶ୍ୱଦୌଡ଼ରେ ବହୁତ ପଛରେ । ନିର୍ଦ୍ଦେଶନା, ଅଭିନୟ, ମଞ୍ଚସଜ୍ଜା ଓ ଆଲୋକ ସଂପାତର ଆଧୁନିକତା, ନବ ନାଟ୍ୟକଳାର ପ୍ରୟୋଗ ହୋଇଥିଲେ ବି କାହିଁକି ଆମ ସ୍ଥାୟୀ ରଙ୍ଗମଞ୍ଚଗୁଡ଼ିକ ଗୋଟିଏ ପରେ ଗୋଟିଏ ବିଲୁପ୍ତ ହୋଇଗଲା – ଏ ଯନ୍ତ୍ରଣା ଓ ବେଦନା ନିର୍ବିକାର ଭାବରେ ଆମେ ସହିଛେ । ଆର୍ତ୍ତନାଦ ଭିତରେ ନୀରବ ରହିଯାଇଛି ଏ ଜାତିର ସ୍ୱାଭିମାନର ସ୍ୱର । ନାଟକ ସହ ଜଡ଼ିତ ଥିବା ନାଟ୍ୟକାର, ସଂଗଠକ ଓ କଳାକାରମାନଙ୍କୁ ଯେତିକି ଦୁଃଖ ନ ଦେଇଛି, ତାଦ ଠାରୁ ସଚେତନ ସମ୍ବେଦନଶୀଳ, ଗୁଣଗ୍ରାହୀ ଦର୍ଶକମାନଙ୍କୁ ନିୟମିତ ନାଟକ ଦେଖିବାର ସୁଯୋଗରୁ ବଞ୍ଚିତ କରି ଦେଇଥିବାରୁ ତାଠାରୁ ଅଧିକ ଯନ୍ତ୍ରଣା ଦେଇଛି, ତାହା ପ୍ରମାଣିତ କରିଛି, ଯେତେବେଳେ ଭଲ ନାଟକଟିଏର ପରିବେଷଣର ଅବକାଶରେ ସେଥିରେ ସୀମିତ ଦର୍ଶକ ସଂଖ୍ୟାକୁ ଆକଳନ କରି ।

ମଞ୍ଚ ନ ଥିବାରୁ ନାଟକ ଲେଖାରେ ଶିଥିଳତା ଆସିଛି । ଯାହା ଯେଉଁଠି ନାଟକ ହେଉଛି ତାହା ଦିନେ କି ଦି ଦିନ ପାଇଁ । ସେଥିରୁ ମାତ୍ରାଧିକ ନାଟକର ଲେଖା ଷଷ୍ଠ ଓ ସପ୍ତମ ଦଶକର, ନିମ୍ନଧରଣର ସଂସ୍କରିତ ଯାତ୍ରା ନାଟକର ପରିବର୍ତ୍ତିତ ରୂପରେଖ ଆଉ କିଛି ମଧ ଅନ୍ୟ ରାଜ୍ୟର ଅନୁଦିତ ନାଟକ । କବି ଅକଳନୀୟ, ଗାଳ୍ପିକ ଶହେରୁ ଟିକିଏ ବେଶୀ ହୋଇପାରେ, ଔପନ୍ୟାସିକ ତ୍ରିଅଙ୍କ ବିଶିଷ୍ଟ ନୁହେଁ, ଆଉ ନାଟ୍ୟକାରଙ୍କ ସଂଖ୍ୟା ନ କହିଲେ ଭଲ । ଅତି ସୁକୁମାର ମନନଶୀଳ ସୃଜନାତ୍ମକ ଚିନ୍ତା, କଠୋର ଶ୍ରମ ଓ ସମୟସାପେକ୍ଷ ଉଦ୍ଦୀପନ ନାଟକ ପରି ପ୍ରଭାବମୟ ବିଭାଗରେ କଲମ ଚଳେଇବା ଅପେକ୍ଷା ସାହିତ୍ୟର ଅନ୍ୟ ସହଜସାଧ୍ୟ ବିଭାଗକୁ ଆଦରିନେବା ସ୍ୱାଭାବିକ । ଏଣୁ ନାଟ୍ୟକାରର ସଂଖ୍ୟା ହାତ ଗଣତିରେ । ଥରେ ରାଜ୍ୟସ୍ତରୀୟ ପୁସ୍ତକ ପ୍ରଦର୍ଶନୀରେ ଜଣେ ବିଶିଷ୍ଟ ନାଟ୍ୟକାର ପୁସ୍ତକଗୁଡ଼ିକ ଉନ୍ମୋଚନ କରୁଥାଆନ୍ତି । ପ୍ରାୟ ସତୁରିରୁ ଊର୍ଦ୍ଧ୍ୱ ପୁସ୍ତକ ଉନ୍ମୋଚିତ ହେଲା । ସେଥିମଧ୍ୟରେ ଖଣ୍ଡିଏ ନାଟକ ବହି ନ ଥିଲା । ସତରେ ଜନସଂଖ୍ୟା ତୁଳନାରେ ଆମ ସାହିତ୍ୟ ଓ ସଂସ୍କୃତିର ବାହକ ସଦୃଶ୍ୟ ମୁକୁରପ୍ରାୟ ବିଭାଗଟିର ଅବସ୍ଥା କେତେ ଶୋଚନୀୟ ?

ନାଟ୍ୟକାର ପ୍ରଥମେ ଜଣେ ସାହିତ୍ୟିକ ଓ ସ୍ରଷ୍ଟା । ସାହିତ୍ୟ ଜାତିର ଅନ୍ତରାତ୍ମାକୁ ଚିହ୍ନେ । ଅବଚେତନ ମଣିଷକୁ ନାଟକ ପ୍ରଦର୍ଶନ ମାଧ୍ୟମରେ ଚେତେଇଦିଏ । ନୂତନ ମୂଲ୍ୟବୋଧକୁ ଆମନ୍ତ୍ରଣ କରେ । ନୀତି ଆଦର୍ଶର ନମୁନା ଭରିଦେବାକୁ ନିଜର ଅନ୍ତର୍ଦୃଷ୍ଟି ଦେଇ ଯାହା ସତ୍ ଉଚିତ୍ ନିର୍ଭୀକ ଭାବରେ ନାଟକର ଚରିତ୍ରରେ ଫୁଟେଇ ଦେବାରେ ନାଟ୍ୟକାରଟି ଯଦି ବ୍ୟର୍ଥ ହୋଇଯାଏ, ଆଶଙ୍କା ଭିତରେ ଲେଖନୀ ଚଳାଏ, ସେ ନାଟକ ଦର୍ଶକକୁ ସ୍ପର୍ଶ କରିବା ତ ଦୂରର କଥା ପ୍ରଭାବିତ କରିବ କେମିତି ? ସେ ନାଟକ ଗଣର ନ ହୋଇ ଜଣର (କେବଳ ନାଟ୍ୟକାର) ହେଇ ରହିଯିବ । ଏଣୁ ନାଟ୍ୟକାରର ଦାୟିତ୍ୱବୋଧ ସମ୍ପର୍କରେ ସେ ପ୍ରଥମେ ସଚେତନ ନ ହୋଇ ନାଟକ ଲେଖିବା ପ୍ରାସଙ୍ଗିକ ହେବ ନାହିଁ । ପରିବର୍ତ୍ତିତ ଢାଞ୍ଚା ବା ପ୍ରଚଳିତ ଦୃଷ୍ଟିରେ ଦର୍ଶକକୁ ଆକର୍ଷିତ କରିବାର କଳା କୁଶଳତା ନିଜେ ହୃଦୟଙ୍ଗମ କରି ସାଧନା ପଥରେ ନିଷ୍ଠାର ସହ ଆଗେଇ ନ ଗଲେ ବ୍ୟବସାୟିକ ରଙ୍ଗମଞ୍ଚ ଭୁଷୁଡ଼ି ପଡ଼ିବା ପରି ସୌଖୀନ ମଞ୍ଚନାଟକ ମଧ୍ୟ ଆଉ ଲେଖା ହେବନାହିଁ । ଏ ପରିପ୍ରେକ୍ଷୀରେ ପ୍ରତିବେଶୀ ରାଜ୍ୟର ରଙ୍ଗମଞ୍ଚ, ନାଟକର ଗତିଧାରା, ପରିବେଷଣ, ନାଟ୍ୟକାରର ଲେଖନୀ ଶୈଳୀ, ଦର୍ଶକର ରୁଚିବୋଧ, ଭରପୂର ରଙ୍ଗମଞ୍ଚ ନାଟକ ପ୍ରତି ମୋହ ଯଦି ବିଚାରକୁ ଆଣିବା ତେବେ ପ୍ରଥମତଃ ସେଠି ନାଟ୍ୟକାର ଭଲ ନାଟକଟିଏ ଲେଖିପାରୁଛି, ଦର୍ଶକକୁ ଆକର୍ଷିତ କରିପାରୁଛି, ଓ ସର୍ବୋପରି ଦର୍ଶକର ସମସ୍ତ ମତାମତ ଓ ସମାଲୋଚନାକୁ ସମ୍ମାନ ସହ ଆଦରି ନେଉଛି । କିନ୍ତୁ ଆମ୍ଭର ଏଠି ସାମୟିକ ବାଃ

ବାଃରେ ମାତି ଯାଇ ନାଟ୍ୟକାରଟି କେତେବେଳେ ଯେ ସ୍ୱୟଂଭୁ କୃତବିଦ୍ ନାଟ୍ୟକାର ହେଇଯାଏ ତାହା ନିଜେ ବି ଜାଣିପାରେନା ।

କଟକ ଓ ଭୁବନେଶ୍ୱର ଆମ ରାଜ୍ୟର ପ୍ରମୁଖ ସହରଦ୍ୱୟ । ଜନସଂଖ୍ୟା ତୁଳନାରେ କେତୋଟି ସ୍ଥାୟୀ ରଙ୍ଗମଞ୍ଚ ରହିବା ଆବଶ୍ୟକ ପାଠକେ ଚିନ୍ତା କରିବେ, କେତୋଟି ମଞ୍ଚ ଆଗରୁ ଥିଲା ଏବଂ କେତେ ରହିଛି ? ସୌଖୀନ କଳାକାରମାନଙ୍କୁ ନେଇ କେତେ ନାଟକ ହେଉଛି ଓ ତାହା କେତେ ଦିନ ଚାଲେ ? କେତେ ଦର୍ଶକ ତାକୁ ଉପଭୋଗ କରନ୍ତି ? କେତେ ସମୀକ୍ଷକ ସେ ସମ୍ପର୍କରେ ଚର୍ଚ୍ଚା କରନ୍ତି ? କେତେ ସମ୍ବାଦପତ୍ର ପତ୍ରପତ୍ରିକା ସମାଲୋଚନାମୂଳକ ସମୀକ୍ଷା ଛାପନ୍ତି ? ଯାର ଉତ୍ତର ମଧ୍ୟ ଆପଣଙ୍କୁ ଜଣାଅଛି ।

ଉତ୍କଳ - ଏହା କଳାର ଦେଶ । ଏଠି ନାଟ୍ୟକର୍ମୀ, ଶିଳ୍ପୀ, କଳାକାର ଅଭାବ ନାହିଁ । ଗଭୀର ଭାବେ ଭାବିଲେ, ଏମାନେ କ୍ଷତାକ୍ତ । ସ୍ୱାଭିମାନର ସମ୍ବେଦନରେ ଏମାନେ ନୀରବ । ଉପଶମ ପାଇଁ ହାତଗୋଡ଼ ଛାଟି ଚିତ୍କାର କରି କରି ଆଜି ନିସ୍ତେଜ । ସ୍ୱାଧୀନୋତ୍ତର ନିଖଟୁ ନେତାଙ୍କ ସହ ନିକମା ଅମଲାତନ୍ତ୍ରୀଙ୍କ ସଲାସୁତରା ସ୍ୱଭାବରେ ଅତିକ୍ରାନ୍ତ ଆମର ସଂସ୍କୃତି, କଳା ଓ ପରମ୍ପରା । ବିଗତ ପାଞ୍ଚବର୍ଷ ହେଲାଣି ରବୀନ୍ଦ୍ରମଣ୍ଡପର ଭଡ଼ା ବୃଦ୍ଧି ହେତୁ କ୍ଲବ୍ ନାଟକ ହେଉନାହିଁ । ପ୍ରତିବାଦ ହେଉଛି, ହେଲେ ଶୁଣିବାକୁ କେହି ନାହିଁ; ଲୋକେ ସଚେତନ ହେଲେ, ସେମାନଙ୍କୁ କାଳ, ଏଣୁ ନାଟକ ନ ହେଉ । ମଞ୍ଚ ବି ନରହୁ । କେବଳ ଭାଷଣ ଦେବାପାଇଁ ଉନ୍ମୁକ୍ତ ରହୁ ମଣ୍ଡପ । ସୂଚନା ଭବନରୁ ରବୀନ୍ଦ୍ର ମଣ୍ଡପର ଦୂରତ୍ୱ ଏକ କିଲୋମିଟର । ସଭାସମିତି ଭାଷଣ ପାଇଁ ସୂଚନା ଭବନ, ଓ ନାଟକ ପାଇଁ ରବୀନ୍ଦ୍ର ମଣ୍ଡପକୁ ବିନିଯୋଗ କରାଗଲେ ସରକାରଙ୍କର ପ୍ରକୃତ ଆଗ୍ରହ ରହିଛି ବୋଲି ଧାରଣା ଆସନ୍ତା ।

ସଂସ୍କୃତି ବିଭାଗ ପାଇଁ ସ୍ୱଳ୍ପ ବଜେଟ୍ ଅଟକଳ, ବେପରୁଆ ଖର୍ଚ୍ଚ ପାଇଁ ଆଶାନୁରୂପ ସଫଳତା ମିଳିନାହିଁ । ସୃଜନଶୀଳ ପ୍ରତିଭାର ଉନ୍ମେଷ, ମଞ୍ଚର ପୁନରୁଦ୍ଧାର ଓ କଳାକାରଙ୍କୁ ପ୍ରୋତ୍ସାହିତ କରିବାରେ ଏ ଅବଧି କେତେ ପରିମାଣର ଅର୍ଥ ସରକାର ବ୍ୟୟ କରିଛନ୍ତି ଓ ଆଗକୁ ଏଥିପାଇଁ କେତେ ବ୍ୟୟ କରିବେ ଅନ୍ତତଃ ତାର ସବିଶେଷ ତଥ୍ୟ ଜନସାଧାରଣଙ୍କ ଗୋଚରାର୍ଥେ ଉପସ୍ଥାପିତ ହେବା ଉଚିତ୍ । ସମାଜରେ ମାନବିକ ମୂଲ୍ୟବୋଧର ଦ୍ରୁତ ଅବକ୍ଷୟ ତଥା ନୈତିକ ସଂକଟରେ ନିଜ ଭିତରେ ରୁନ୍ଧି ହୋଇଯିବା ବେଳେ ନାଟକ ପରି ଜୀବନ୍ତ ରୁଚିଶୀଳ ସୃଜନାତ୍ମକ ସଚେତନଶୀଳ ଗଣମାଧ୍ୟମର ପ୍ରୟୋଗରେ ଯଦି ଟିକିଏ ଉପଯୋଗ କରିବାକୁ ବ୍ୟକ୍ତି ଥରେ ମନସ୍ଥ କରେ ଏବଂ ନାଟ୍ୟକାର ସମାଜ ଜୀବନ ସହ ନିଜକୁ ସାମିଲ କରି ଜୀବନର ହସ ଲୁହ, ସୁଖ ଦୁଃଖ, ମାନ

ଅଭିମାନ, ପ୍ରେମ ବିରହ ଓ ସଂପ୍ରୀତିକୁ ଲେଖନୀରେ ପ୍ରତିଫଳନ କରିବାକୁ ପ୍ରୟାସ କରେ ନିଶ୍ଚୟ ଦର୍ଶକ ନାଟକ ଦେଖିବାକୁ ଧାଡ଼ି ବାନ୍ଧିବେ । ଆମ ନାଟକର ଭବିଷ୍ୟତ ଉଜ୍ଜ୍ୱଳମୟ ହେବ ।

ଏଇ ନାଟକଟି ବହୁବାର ରବୀନ୍ଦ୍ରମଣ୍ଡପରେ ମଞ୍ଚସ୍ଥ ହୋଇଛି । ଆକାଶବାଣୀରେ ଏହାର ସୀମିତ କଳେବରକୁ ନେଇ ବେତାର ରୂପାନ୍ତର ହୋଇ ପ୍ରସାରିତ ହେଇଛି । ପ୍ରଶଂସିତ ହେଇଛି ମଧ୍ୟ । ନାଟକଦୁଇଟି ପରିବେଷଣରେ ଯେଉଁମାନଙ୍କର ଅବଦାନ ରହିଛି ସେଇମାନଙ୍କ ମଧ୍ୟରେ କେତେକଙ୍କୁ ମୁଁ ଭୁଲିପାରିନାହିଁ । ସେଇ ସ୍ୱନାମଧନ୍ୟ ନିର୍ଦ୍ଦେଶକ ମାନଙ୍କ ଭିତରେ ସର୍ବଶ୍ରୀ ସୀତାକାନ୍ତ ମହାନ୍ତି, ପ୍ରତାପ ମହାନ୍ତି, ଅକ୍ଷୟ ମହାନ୍ତି (କାଶ୍ୟପ), ଗଗନ ଚନ୍ଦ୍ର ଦାସ, ଗୋପବନ୍ଧୁ ଚୌଧୁରୀଙ୍କୁ ଶ୍ରଦ୍ଧାର ସହ ସ୍ମରଣ କରୁଛି ।

ନାଟ୍ୟକାର

## ଚରିତ୍ର

ସୁରେନ୍ଦ୍ର

ଅନୁପମ

ରଂଜନ

ବୁଧିଆ

ରୀମା

(ଏହି ନାଟକଟି ଅନେକ ଥର ଭୁବନେଶ୍ୱରସ୍ଥ ରବୀନ୍ଦ୍ର ମଣ୍ଡପରେ ପରିବେଷଣ ଓ ଆକାଶବାଣୀରୁ ଏହାର ବେତାର ରୂପାନ୍ତରିତ ନାଟକ ପ୍ରସାରିତ ହୋଇଛି । ନାଟକଟିର ସମୟସୀମା ଏକଘଣ୍ଟା ପଇଁତାଳିଶି ମିନିଟ୍)

# ପ୍ରଥମ ଦୃଶ୍ୟ

[ ରୀମା ଓ ଅନୁପମ ଗୀତ ଓ ନାଚ ଭିତରେ ମଜ୍ଜି ଯାଇଛନ୍ତି । ନାଚ ଭିତରେ ଅନୁପମ ଅପସାରିତ ହେଇଯାଇଛନ୍ତି । ରୀମା ପୂର୍ବ ଅବସ୍ଥାକୁ ଫେରି ଆସିଛନ୍ତି । ପାଗଳାମି ବହୁତ ବଢ଼ିଯାଇଛି । ହସ-କାନ୍ଦ-ରାଗ ଭିତରେ । ସିନ୍ଦୂର ଫରୁଆ, ଅଳତା, ପାନିଆ ଆଦି ଫିଙ୍ଗା ଫୋପଡ଼ା କରିଛି । - ଡାକିଛି ବୁଧିଆକୁ ]

ରୀମା ବୁଧିଆ....ବୁଧିଆ....ବୁଧିଆ......

[ ଘରର ସବୁ ସ୍ଥାନ ଖୋଜି ନ ପାଇ ଖଟ ତଳେ ଖୋଜିଛି - ବୁଧିଆ ପ୍ରବେଶ କରି ସିନ୍ଦୂର ଫରୁଆ ଇତ୍ୟାଦି ଇତସ୍ତତଃ ପଡ଼ିଥିବା ଦେଖିଛି ]

ବୁଧିଆ ଦେଈ... ଦେଈ... ଏ ସବୁ କଣ ହଉଚି ?

[ ରୀମା ବୁଧିଆକୁ ଦେଖି ରାଗିଯାଇ ତକିଆଟାକୁ ଫିଙ୍ଗିଛି ବୁଧିଆ ଉପରକୁ ]

ରୀମା ଇଡ଼ିୟଟ୍ ।

ଘଣ୍ଟାଟିଏ ହେଲା ତତେ ଡାକୁଚି, କଣ କରୁଥିଲୁ ତୁ ?

ବୁଧିଆ କ'ଣ ହେଲା ତମର ?

କାଇଁକି ପାଟିଟା କରି କମ୍ପୋଉଚ ?

ରୀମା କାଇଁ ? ମୋ ସିନ୍ଦୂର ଫରୁଆ କାଇଁ ?

ମୋ ଅଳତା ? ପାନିଆ ? ଶଙ୍ଖା ?

ବୁଧିଆ ଏଁ .... ଏଇଠି ତ ଥିଲା, କୁଆଡ଼େ ଗଲା, ମୁଁ କେମିତି ଜାଣିଲି ?

ରୀମା : [ ଜୋରରେ କାନ୍ଦି ଉଠି ] ନାଇଁ - ତୁ ମତେ ଦେ ।

ତୁ କୋଉଠି ଲୁଚେଇ ଦେଇଚୁ । ଦେ କଉଚି,

ତା ନ ହେଲେ ସତ କଉଚି, ମୁଁ ଆଜି ପାଣି ଛୁଇଁବିନି । [ଆହୁରି କାନ୍ଦି ଉଠିଚି ]

ବୁଧିଆ : ଓହୋ, ଦେଈ !

କାଇଁକି ଏମିତି ପିଲାଙ୍କ ପରି ହଉଚ କହିଲ ?

ଆଚ୍ଛା-ଖୋଜ, ଏମିତି ବାହୁନି ହେଲେ ହବ ?

ସିନ୍ଦୂର ଅଳତା ସବୁତ ଏଇଠି ଥିଲା । [ ଖୋଜିଛି ନିଜେ ]
ଏଇ ଛୋଟ କଥା ପାଇଁ ତମର ଏତେ କାନ୍ଦ ।

ରୀମା [ କାନ୍ଦି କାନ୍ଦି ] ନାଇଁ ତୁ ଏଇ ସାଙ୍ଗେ ସାଙ୍ଗେ ମାତେ ଖୋଜି ଆଣି ଦେ ।

ବୁଧିଆ ହଉ ହେଲା ବାବା ମୁଁ ଖୋଜି ଦେବି ସାଙ୍ଗେ ସାଙ୍ଗେ ନହେଲେ କୋଉଏବେ ପୃଥିବୀ ପ୍ରଳୟ ହେଇଯିବ ଯେ ?

ରୀମା ଚୁପ୍‌କର ! ଭାରି ବଡ଼ ବଡ଼ କଥା କହୁଚି ।
ତତେ ତ କହିଲି ଖୋଜି ଦେ, ସାଙ୍ଗେ ସାଙ୍ଗେ ତୁ ଖୋଜିବୁ । ତା ନ ହେଲେ ମୁଁ ... (କାନ୍ଦିଛି)

ବୁଧିଆ ଦେଇ ! ସୁନା ଝିଅମାନେ ଏମିତି ହୁଅନ୍ତିନି ।

ରୀମା (ରାଗ) ଥାଉ, ଥାଉ
ମତେ ଉପଦେଶ ଦେବା ଦରକାର ନାଇଁ । ଯାଆ, ଯାଆ, ସେଠିକି, ଧଅ କାନ ।
ଏପଟେ ହାତବୁଲା, ହଁ – ନାକ ଧଅ । ଶହେଥର ଉଠବସ ହ ।

ବୁଧିଆ ହଉ ହେଲା ।
ଏ ବୁଢ଼ା ବଅସରେ ତମେ ଯାହା ହନ୍ତସନ୍ତ କରି ....

ରୀମା ବୁଢ଼ା ? ବୁଢ଼ାଟିଏ ହେଲୁଣି ତ, ତଥାପି ଆଜି ପର୍ଯ୍ୟନ୍ତ
ତୋ ଦେଇକଥା କଣ ତୁ ଜାଣିନୁ । ଏ ଘୋଡ଼ା ହଅ । (ଧମକାଇ) ଘୋଡ଼ା ହଅ କଉଚି । (ବୁଧିଆ ତାର ଅନିଚ୍ଛା ସତ୍ତ୍ୱେ ଘୋଡ଼ା ହୋଇଛି ଓ ରୀମା ତା ପିଠିରେ ବସି ଟୁଇଙ୍କିଲ ଟୁଇଙ୍କିଲ ଷ୍ଟାର ଗୀତ ବୋଲିଛି
ରୀମା ଗୀତ ଭିତରେ କାନ୍ଦି ଉଠିଛି – ବୁଧିଆ ଭୁଲାଇବାକୁ ଚେଷ୍ଟାକରି

ବୁଧିଆ : ଦେଈ ।
ତୁମେ ପରା ସିନ୍ଦୂର ଆଉ ଅଳତା ଖୋଜୁଥିଲ ?

ରୀମା [ ହସି ହସି ] ଆରେ ହଁ ତ,
ଠିକ୍ ମନେ ପକେଇଚୁ ? ତୁ ମୋ ସିନ୍ଦୂର ଅଳତା ଖୋଜି ଦଉନୁ, ମୁଁ ପରା ପାଉନି ।
ଖୋଜି ଦେ ଟିକିଏ ।

ବୁଧିଆ ଖୋଜି ଦେବି ଯେ, ହେଲେ ତମେ ପରା ଗାଧେଇନ ।

ରୀମା ଏଁ, ମୁଁ ଗାଧେଇନି ? (ମନେ ପକାଇ) ନାଇଁ ନାଇଁ ମୁଁ ଗାଧେଇଚି ।
ହଁ, ମୁଁ ଗାଧେଇଚି ।

ବୁଧିଆ ନାଇଁମ ଦେଇ !
ତମେ ଗାଧେଇନା ।
ଗାଧୁଆ ପାଧୁଆ ସାରି ସିନା ସିନ୍ଦୂର ଅଳତା ପିନ୍ଧନ୍ତି ।
ତୁ ସତ କଉଛୁ । ମୁଁ ଗାଧେଇନି ।

ରୀମା ହଉ ହେଲା । ମୁଁ ବାଥ୍‌ରୁମ୍ ଯାଉଚି ।
ମୁଁ ଆସିଲା ବେଳକୁ ଯେମିତି ମୋ ସିନ୍ଦୂର ଫରୁଆ, ଅଳତା, ପାନିଆ, ଶଙ୍ଖା
ମୋ ଡ୍ରେସିଂ ଟେବୁଲ ଥାକରେ ଥିବ, ବୁଝିଲୁ ?

ବୁଧିଆ ହଉ ବାବା ହଉ ।
ରଖା ହେଇଥିବ । ତମେ ଆଗ ଯିବଟି । ଯାଆ ।

ରୀମା [ଯାଉ ଯାଉ ଫେରି ପଡ଼ି] ହଁ, ଶୁଣ ।
ମୋର ସେଇ ନୂଆ ନାଲି ବନାରସୀ ପାଟଟା ।
ସେଇଟା ବାହାର କରିଦେବୁ । ମୁଁ ଆଜି ସେଇଟା ପିନ୍ଧିବି ।
ସିନ୍ଦୂର ଲଗେଇବି, ଅଳତା ପିନ୍ଧିବି, ଶଙ୍ଖା ପିନ୍ଧିବି, ସେତେବେଳକୁ
ମୁଁ କେମିତି ଦେଖା ହେବି କହିଲୁ ?
କେମିତି ?
ଆରେ ଠିକ୍ ନାଲି ଟୁକୁଟୁକୁ ସାଧବ ବୋହୂ ପରି ।
ଭାରି ଭଲ ଦିଶିବ ନା ?

ବୁଧିଆ ଏଁ .... ହଁ, ହଁ ଭାରି ଭଲ ଦିଶିବ ।
ତମେ ଯିବଟି ଯା, ... (ରୀମା ଚାଲିଯାଇଛି । ଡା. ରଞ୍ଜନ ଇତି ମଧ୍ୟରେ ପ୍ରବେଶ କରି ରୀମାକୁ ଲକ୍ଷ୍ୟ କରୁଥିଲେ – ବୁଧିଆ ଦୁଃଖରେ ରୀମାର ଗତିପଥକୁ ଚାହିଁ ଦୀର୍ଘ ନିଃଶ୍ୱାସଟାଏ ପକେଇ ବୁଲିପଡ଼ିଲା· ବେଳକୁ ଡ. ରଞ୍ଜନକୁ ସାମ୍ନା କରିଛି । ବୁଧିଆ ନମସ୍କାର କରିଛି ।)

ରୀମା ନମସ୍କାର ଡାକ୍ତର ବାବୁ !

ଆସନ୍ତୁ - ବସନ୍ତୁ ।
ଦେଖିଲେ ତ ବାବୁ ! ଶେଷରେ ଏଇ ବଅସରେ
ଝିଅଟା କଣ ସବୁଦିନ ପାଇଁ ପାଗଳୀ ହେଇ ରହିଯିବ ?
ମୁଁ କେମିତି ସହିବି କହିଲ ବାବୁ ?

ରଞ୍ଜନ — ଦେଖ ବୁଧିଆ !
ତମ ଦେଇ ଜଣେ ସିଜୋଫେନିଆ ପେସେଣ୍ଟ, ମାନିକ୍ ଡ଼ିପ୍ରେସିଭ,
ଯାହାକୁ କହନ୍ତି ସାଇକୋସିସ୍ ।

ବୁଧିଆ — ଦେଖବାବୁ ! ସେ ସବୁ ମୁଁ କିଛି ବୁଝେନି ।
ବୁଢ଼ାବାବୁ ଆଖି ବୁଜିବାର ଆଜିକୁ ଛଅମାସ ହୋଇଗଲା ।
ଏଇ ଶଙ୍ଖା, ସିନ୍ଦୂର ଆଉ ସେଇ ଅଳତା ପାଇଁ
ସବୁଦିନ ଏ ଘରେ ଏ ତାମସା
ନିଜ ଆଖିରେ ଦେଖିଲେତ ? ସତରେ ବାବୁ !
ଦିନକୁ ଦିନ ଦେଇଙ୍କର ପାଗଳାମି ବଢୁଚି ସିନା
ହେଲେ କମୁନି ।
କିଛି ଗୋଟାଏ କରନ୍ତୁ ବାବୁ !

ରଞ୍ଜନ — ସତରେ ବୁଧିଆ !
ଏଇ ମଣିଷର ମନଟା ବଡ଼ ବିଚିତ୍ର ! ତାର ହିସାବ ଖୋଜି ବସିଲେ,
ଅଡୁଆ ସୂତାରେ ଗୁଡ଼େଇ ତୁଡ଼େଇ ହେଇଯିବ ସିନା,
କିନ୍ତୁ ଖିଅ ପାଇବନି ।
ଏଇ ମନ -
ଟିକିଏ ଆଘାତରେ ଧୂଳିରେ ମିଶିଯାଏ, ପୁଣି ଏଇମନ-
ପ୍ରଚଣ୍ଡ ଆଘାତକୁ ହସି ହସି ସବୁ ସହି ବି ଯାଏ ।

ବୁଧିଆ — ଡାକ୍ତର ବାବୁ !
ମୋ ଦେଇ କଣ ସତରେ
ଆଉ ଭଲ ହେବେନି ?
ଏତେ ଦିଅଁ, ଦେବତା, ଡାକ୍ତର ବଇଦ
ସମସ୍ତେ କଣ ହାର ମାନିଯିବେ ?

| | |
|---|---|
| ରଞ୍ଜନ | [ ଚିନ୍ତାକରି ]<br>ମୁଁ ବି ଠିକ୍ ବୁଝିପାରୁନି ବୁଧିଆ ।<br>କୋଉଥିପାଇଁ ତାଙ୍କର<br>ଏ ମାନସିକ ଅସ୍ଥିରତା ।<br>କାଇଁକି ସେ ସବୁବେଳେ<br>ସିନ୍ଦୂର, ଅଳତା, ପାଇଁ ଏତେ ଜିଦ୍ କରୁଛନ୍ତି ? |
| ବୁଧିଆ | ସେ ଅନେକ କଥା ବାବୁ !<br>ଦେଈ ଆମର ଏମିତି ନ ଥିଲେ,<br>ବୁଢ଼ା ବାବୁଙ୍କ ସାଙ୍ଗ ମହେନ୍ଦ୍ର ବାବୁ,<br>ତାଙ୍କ ପୁଅ ଅନୁପମ<br>ଆମ ଦେଈଙ୍କର ପିଲାବେଳର ସାଙ୍ଗ<br>ଦେଈବି ଖୁବ୍ ଭଲ ପାଉଥିଲେ ତାଙ୍କୁ<br>ହେଲେ<br>ଅନୁପମ ବାବୁ ଯେତେବେଳେ ଡାକ୍ତରୀ ପାଠ ପଢ଼ି ଫେରିଲେ<br>ତା' ପରେ ସବୁ ଅଘଟଣ....<br>ମା' ଥିଲାବେଳେ ଅନୁପମ ବାବୁଙ୍କ ମା' ସଙ୍ଗେ<br>ରାଧାମାଧବ ମନ୍ଦିରରେ ଶପଥ ନେଇଥିଲେ ଦୁହେଁ<br>ବାହା ହେବେ. |
| ରଞ୍ଜନ | ଅଘଟଣ .... |
| ବୁଧିଆ | ହଁ .... ଡାକ୍ତର ବାବୁ !<br>ସେଦିନ ..... (ଅନ୍ଧାର) |



## ଦ୍ୱିତୀୟ ଦୃଶ୍ୟ

[ମଞ୍ଚରେ ସ୍ୱଚ୍ଛ ଆଲୋକ –
ଚାଦର ଘୋଡ଼େଇ ହୋଇ ଲୁଚି ଲୁଚି ଘର ଭିତରୁ ଆସିଛନ୍ତି କର୍ଣ୍ଣେଲ ସୁରେନ୍ଦ୍ର । ସୋଫା ଉପରେ ବସିରହି ଚାଦର ଭିତରେ ଲୁଚାଇ ରଖିଥିବା ସନ୍ଦେଶ ପୁଡ଼ିଆକୁ ପଦାକୁ କାଢ଼ି
ସତର୍କତା ସହ ଚାରି ଆଡ଼କୁ ଲକ୍ଷ୍ୟ କରିଛନ୍ତି ...
କେହି ନ ଥିବାର ଦେଖି
ଗୋଟାକପରେ ଗୋଟାଏ ସନ୍ଦେଶ ତରତର ହୋଇ
ଖାଇ ଚାଲିଛନ୍ତି ...
ଭିତରୁ ଡାକିଛି ରୀମା–
ରୀମାର ଡାକରେ ସତର୍କ ହୋଇ ପଡ଼ିଛନ୍ତି ସୁରେନ୍ଦ୍ର]

ରୀମା     ଡାଡି ......
ଡାଡି ...... ।
(ଡାକି ଡାକି ଆସି ଦେଖିଛି,
ସୁରେନ୍ଦ୍ର ଘୋଡ଼େଇ ହୋଇ ବସିଛନ୍ତି ...
ଆଶ୍ଚର୍ଯ୍ୟ ହୋଇ)
ଆରେ, ତମେ ଏଇଠି ବସିଛ,
ମୁଁ ଘରଟାସାରା ଖୋଜି ବୁଲୁଚି ।
କଣ ହେଇଚି ଡାଡି !
ଦେହ ଭଲ ନାହିଁ ?
(ସୁରେନ୍ଦ୍ର ମୁଣ୍ଡ ହଲାଇ ଦେହ ଭଲଥିବାର ସୂଚନା ଦେଲେ)

ରୀମା     ତାହେଲେ ଘୋଡ଼େଇ ହେଇଚ କାହିଁକି ?
(ସୁରେନ୍ଦ୍ର ହାତ ହଲାଇ
କିଛି ନାଇଁ ବୋଲି ଇସାରା ଦେଇଛନ୍ତି)
ଆଜି ମର୍ଣ୍ଣିଂଓ୍ୱାକରେ ଯାଇଥିଲ ?

(ସୁରେନ୍ଦ୍ର ମୁଣ୍ଡ ହଲାଇ ହଁ କରିଛନ୍ତି)
Medicine ଖାଇଥିଲ ?
(ସୁରେନ୍ଦ୍ର କିଛି ନ କହି ଉଁ ଉଁ ହୋଇଛନ୍ତି),
କିଛି ନ କହି ଖାଲି ଉଁ ଉଁ ଆଁ ଆଁ ହଉଚ କ'ଣ ଯେ ?
(ରୀମା ମୁହଁ ପାଖକୁ କଣ ଖାଉଥିବାର ଲକ୍ଷ୍ୟ କରି)
କ'ଣ ଖାଉଛ ଯେ ?
(ସୁରେନ୍ଦ୍ର ସନ୍ଦେଶ ପୁଡ଼ିଆକୁ ଲୁଚାଇବାକୁ ଯିବାବେଳେ
ରୀମା ଦେଖିନେଇ ସନ୍ଦେଶ ପୁଡ଼ିଆ ଛଡ଼ାଇ ଆଣିଛି)
ହେ ଭଗବାନ !
... ସକାଳୁ ସକାଳୁ ଖାଲି ପେଟରେ
ଏତେ ଗୁଡ଼ାଏ ସନ୍ଦେଶ ତୁମେ ଖାଉଥିଲ ।
ତୁମକୁ ପରା ମିଠା ଖାଇବାକୁ
ଡାକ୍ତର ଅଙ୍କଲ ମନା କରିଛନ୍ତି ।
ତମେ ପରା Diabetics Patient. ତା ସତ୍ତ୍ୱେ
ତୁମେ ଲୁଚେଇ ଲୁଚେଇ .....
ମୁଁ ଆଉ ତମକୁ ଜଗି ପାରିବିନି ।

ସୁରେନ୍ଦ୍ର : ନା'ରେ ମା !
ଆଜି ସକାଳୁ ସକାଳୁ ଏତେ ବଡ଼ ଖୁସି ଖବରଟା ପାଇ
ନିଜକୁ ସମ୍ଭାଳି ପାରିଲିନି ।

ରୀମା : ଖୁସି ଖବର ?
କି ଖୁସି ଖବର ?

ସୁରେନ୍ଦ୍ର : ନେ, ଦେଖ୍ ।

ରୀମା : ମୋର ଦେଖିବା ଦରକାର ନାହିଁ ।
ତମେ ତ ମୋର କିଛି କଥା ଶୁଣୁନା ।
ମୁଁ ଆଉ ଏଠି କାହିଁକି ରହିବି ।
ଆଜି ମୁଁ ହଷ୍ଟେଲ ଫେରିଯିବି ।

ତେଣିକି ତମ ମନଇଚ୍ଛା ଯାହା କରୁଚ କର ।
(ରୀମା ପଦାକୁ ଯିବାକୁ ଉଦ୍ୟତ...
ସୁରେନ୍ଦ୍ର କମାଣ୍ଡ ଦେବା ଭଙ୍ଗୀରେ ଡାକିଛନ୍ତି)

ସୁରେନ୍ଦ୍ର : ହଲଟ୍ !
ଆଇ ସେ ହଲଟ୍ ।
(ରୀମା ରହିଯାଇଛି) ଆ... ଏଠିକି ଆ କହୁଚି ।
(ରୀମା ଆସିଛି)
ଏଇ ସାମାନ୍ୟ କଥାରେ ରାଗି
ଘରୁ ପଳେଇବାକୁ ବସିଚୁ ।
ହଉ ଯିବୁ ...
କିନ୍ତୁ
ତା ଆଗରୁ ଖବରଟା
ତୁ ଶୁଣିବା ନିହାତି ଦରକାର ।

ରୀମା ଖବର ?

ସୁରେନ୍ଦ୍ର ହଁ ଖବର !
ଖବରଟା ଶୁଣିଲେ ତୁ ବି ଖୁସିରେ ନାଚି ଉଠିବୁ ।

ରୀମା ହଉ ହଉ, ହେଲା ।
ଏତେ ଆଉ ବଖାଣିବା ଦରକାର ନାହିଁ ।
ଯାହା କହିବା କଥା ସିଧା ସିଧା କୁହ !

ସୁରେନ୍ଦ୍ର ଅନୁପମର ରେଜଲ୍ଟ ବାହାରିଚି ।

ରୀମା ଅନୁପମ !

ସୁରେନ୍ଦ୍ର ଆରେ ଆମ ମହେନ୍ଦ୍ରର ପୁଅ ଅନୁପମ,
ତୋ ସାଙ୍ଗ

ରୀମା କ'ଣ ହେଇଗଲା ସେଇଠୁ ।

ସୁରେନ୍ଦ୍ର ଆରେ ଖାଲି ପାଶ୍ କରିନି,
MBBS ରେ ଫାଷ୍ଟକ୍ଲାସ ଫାଷ୍ଟ,

ଗୋଲଡ୍ ମେଡ଼ାଲିଷ୍ଟ ହେଇ,
ଆମ ଷ୍ଟେଟ୍‌ର ନାଁ ରଖିଛି ।
ଆରେ ତା ପାଇଁ ଗର୍ବରେ
ମୋ ଛାତି ଆଜି ଫୁଲି ଉଠୁଚି ।
ଆଉ ତୁ କହୁଚୁ,
କଣ ହେଇଗଲା ।

ରୀମା ନା ଡ଼ାଡ଼ି,
ମୁଁ ସେମିତି .....

ସୁରେନ୍ଦ୍ର ମୁଁ ଜାଣେ ରେ, ମା ...
ତୋ ମନକଥା ମୁଁ ଠିକ୍ ଜାଣେ ।
ତୁମ ଦୁଇ ଜଣକୁ ହାତକୁ ଦି ହାତ କରିଦେଲେ
ମୁଁ ପୁଣି ଥରେ ରିଟାୟାଡ଼୍ କରିବି ।
(ରିମା ଲାଜେଇ ଯାଇ ଘର ଭିତରକୁ ଯିବାକୁ ଉଦ୍ୟତ)

ରୀମା : ମୁଁ ଆସୁଚି ଡ଼ାଡ଼ି !

ସୁରେନ୍ଦ୍ର No, you can't go ,

ରୀମା କ'ଣ ମତେବି କମାଣ୍ଡ ଦେବା ଆରମ୍ଭ କରିଦେଲ ।

ସୁରେନ୍ଦ୍ର Yes, it's my order.

ରୀମା Order.

ସୁରେନ୍ଦ୍ର ଆରେ ମହେନ୍ଦ୍ର ଆଜି ଫୋନ କରିଥିଲା
ଅନୁପମ ଆସୁଚି ।
ତୁ ତାକୁ ରିସିଭ କରିବାକୁ ଯିବୁ ତ ?

ରୀମା ନା !
କାହିଁକି ଯିବି ?

ସୁରେନ୍ଦ୍ର କାହିଁକି ?

ରୀମା : କାହିଁକି ଯିବି !
ଏତେ ଦିନ ଭିତରେ ଖଣ୍ଡିଏ ହେଲେ

ଚିଠିବି ମୋ ପାଖକୁ ଦେଇ ନାହାନ୍ତି ।
ମୁଁ କାହିଁକି ଯିବି ?
କିଏ କହିପାରେ,
ସେ ହୁଏତ ମୋତେ ଚିହ୍ନି ନ ପାରନ୍ତି ।

ସୁରେନ୍ଦ୍ର : No, No, it's impossible
ଆରେ ଅନୁପମ ତତେ ଚିହ୍ନିପାରିବନି ?
ମୁଁ କହୁଛି
ସେ ନିଶ୍ଚୟ ଚିହ୍ନିବ ।
So don't make delay, get ready.

ରୀମା କହିଲି ପରା ଯିବିନି ।

ସୁରେନ୍ଦ୍ର ତା ମାନେ ତୁ ମତେ disobey କରୁଚୁ ।

ରୀମା ତୁମେ ଭୁଲି ଯାଉଚ ଡ଼ାଡ଼ି ।
ମୁଁ ବି ତୁମ ଝିଅ ।
ଚାଲିଯାଅ ଏଇଟା ମୋର final decision ।
ତମେ ଚାଲିଯାଅ ।

ସୁରେନ୍ଦ୍ର OK. OK., ତୁ ଯା'
ଡ୍ରାଇଭରକୁ ଡାକି ଦେ ।

ରୀମା : ବୁଧିଆ, ବୁଧିଆ ....

ସୁରେନ୍ଦ୍ର : ଚାଲୁନୁ, ଆରେ ମା ଚାଲୁନୁ । ତତେ ଦେଖିଲେ ସେ କେତେ ଖୁସି ହେଇଯିବ କହିଲୁ ।

ରୀମା : କହିଲି ପରା ଯିବିନି । ଶୁଭୁନି ତୁମକୁ ।

ବୁଧିଆ : (ପ୍ରବେଶି) ମତେ ଡାକିଲେ ଦେଈ ।

ସୁରେନ୍ଦ୍ର : ହଁ, ଡ୍ରାଇଭରକୁ କହ ଗାଡ଼ି ବାହାର କରିବ ।

ବୁଧିଆ : ଡ୍ରାଇଭର !!!

ସୁରେନ୍ଦ୍ର : (ବିରକ୍ତିରେ) Nonsense । ତତେ କଣ ଥରକରେ ଶୁଭିଲାନି, ପୁଣି ପଚାରୁଚୁ ।

ବୁଧିଆ : ଡ୍ରାଇଭର ପରା ଛୁଟିରେ ଯାଇଚି ।

ସୁରେନ୍ଦ୍ର ଛୁଟିରେ ଯାଇଚି ?

ରୀମା ତା ଭଉଣୀର ବାହାଘର ବୋଲି ନିଜେ ଛୁଟି ଦେଇନ !

ସୁରେନ୍ଦ୍ର ଆରେ ହଁ ତ ।
Oh, my god, it's allright
ଠିକ୍ ଅଛି
ମୁଁ ନିଜେ ଡ୍ରାଇଭିଂ କରିଯିବି ।

ରୀମା ତମେ ଡ୍ରାଇଭିଂ କରିବ ?

ସୁରେନ୍ଦ୍ର ହଁ ।
ତୋର ମନେରଖିବା ଉଚିତ
ତୋ ବାପା ଜଣେ ରିଟାର୍ଡ କର୍ଣ୍ଣେଲ ।
I have got stamina to drive.

ରୀମା ଠିକ୍ ଅଛି ବଟ୍ ଟେକ୍ କେୟାର ।

ସୁରେନ୍ଦ୍ର ହଁ,
ମନେରଖ ... ଅନୁପମର ଚର୍ଚ୍ଚାରେ
ଯେମିତି ଟିକିଏ ବି ଅବହେଳା ନ ହୁଏ । ତା' ନହେଲେ ମହେନ୍ଦ୍ର
କଣ ଭାବିବ କହିଲୁ ? ମୁଁ ଆସୁଛି ...
(ପ୍ରସ୍ଥାନ)

ରୀମା ବୁଧିଆ !

ବୁଧିଆ ହାଁ ।

ରୀମା କଣ ହାଁଟା କରି ଅନେଇଚୁ ।
ଡାଡି କଣ କହିଲେ ମନେ ରହିଲା ତ ?

ବୁଧିଆ ହଁ ।
ସବୁ ମନେ ରହିଲା । ମୁଁ କଣ କରୁଚି ଦେଖ ।
ଅନୁପମ ବାବୁପରା ଆଜି ଆସିବେ ।
ମୁଁ କଣ ଜାଣିନି ?

ରୀମା ହଉ ସେ ବାହାଦୁରୀ ଦେଖେଇବା ଦରକାର ନାହିଁ । ଶୀଘ୍ର ଯା ।

ବୁଧିଆ ହଉ ।

(ପ୍ରସ୍ଥାନ)

ରୀମା : ଦୀର୍ଘ ପନ୍ଦର ବର୍ଷ ପରେ ଅନୁପମ ଆସିବେ,

ଆମର ସେଇ ପିଲାଦିନର କଣ୍ଢେଇ ଖେଳ, ବାହା ବେଦିରେ ସେଇ ବର କନିଆ,

ସେ ସବୁ କ'ଣ ତାଙ୍କର ମନେଥିବ ।

(କଣ୍ଢେଇ ବାହାଘର

ଛୋଟ ରୀମା ଓ ଛୋଟ ଅନୁପମ ବସି କଣ୍ଢେଇ ଖେଳୁଛନ୍ତି)

ରୀମା ନାଇଁ ନାଇଁ ....

ମୋ କଣ୍ଢେଇ ସହିତ ତୁମ କଣ୍ଢେଇକୁ

ମୁଁ ବାହା ଦେବିନି ।

ଅନୁପମ କାହିଁକି ?

ରୀମା ମୋ ବଉଳର କଣ୍ଢେଇ ସାଙ୍ଗରେ

ମୋ କଣ୍ଢେଇର ବାହାଘର ହେବ ।

ଅନୁପମ କାହିଁକି ?

ମୋ କଣ୍ଢେଇ କଣ ସୁନ୍ଦର ନୁହଁ ।

ରୀମା ହଁ ଯେ,

ହେଲେ ତମ କଣ୍ଢେଇ ସାଙ୍ଗରେ

ବାହାଘର ହେଇ ପାରିବନି ... ପାରିବନି - ପାରିବନି ।

ଅନୁପମ : ଦେଖିବା କେମିତି ନ ହବ !

ରୀମା ଓହୋ,

ତମେ ବୁଝୁନ କାଇଁକି ଯେ ।

ତମେ ପରା ମୋର ବର ହେବ ।

ଅନୁପମ ଆଉ ତୁ ?

ରୀମା : ମୁଁ ତୁମ କନିଆଁ ।

ଅନୁପମ	କଣ ହେଇଗଲା ସେଇଠୁ ?

ରୀମା	ଆରେ ତମ ସାଙ୍ଗରେ ପରା
ମୋର ବାହାଘର ହବ,
ଶଙ୍ଖ ହୁଳହୁଳି ପଡ଼ିବ
କେତେ ଲୋକ ଆସିବେ,
ଭୋଜିଭାତ ଖାଇବେ ।
ଏତିକି ତମେ ବୁଝି ପାରୁନା,
ନିହାତି ବୋକା, ଯା .... ତମେ ତ ବୁଝୁନ ....
(ଶଙ୍ଖ ହୁଳହୁଳି ଧ୍ୱନି,
ସାହାନାଇ ବାଜିଲା - ରୀମା ଅନୁପମ ବେକରେ ଫୁଲହାର ପକାଇଲା - ସେଇ ହାରକୁ ନିଜ ବେକରୁ କାଢ଼ି
ରୀମାକୁ ପିନ୍ଧାଇଲା ଭିତରେ ସ୍ୱଳ୍ପ ଅନ୍ଧାର ଅନ୍ୟ Zoneରେ ବଡ଼ ରୀମା)

ରୀମା	ପିଲା ଦିନର ସେଇ ସ୍ମୃତି ଆଜି
ମୋ ଆଖି ଆଗରେ ନାଚି ଯାଉଚି ।
ଅନେକ ଦିନର ସ୍ୱପ୍ନ ମୋର ଆଜି ସାକାର ହେବ ।
ଅନୁପମ ମୋ ଜୀବନର ପ୍ରତିଟି ମୁହୂର୍ତ୍ତକୁ ରୋମାଞ୍ଚିତ କରି
ମୋ ଭଲ ପାଇବାକୁ ସାର୍ଥକ କରିବେ । ତାଙ୍କୁ ବରବେଶରେ ଦେଖି
(ଅନୁପମ ବରବେଶରେ ଆସିଛି ...
ରୀମାକୁ ଛୁଇଁ ତାର ଲାଜୁଆ ମୁହଁକୁ ଟେକି ଧରି
ଓଢ଼ଣାକୁ ରୀମାର ମୁଣ୍ଡରେ ଢାଙ୍କି ଦେଇଛନ୍ତି
ଗୀତ ... ଗୀତ ଶେଷରେ ଅନୁପମ ଅପସରି ଯାଇଛନ୍ତି)

ରୀମା (ସ୍ୱାଗତ) : ଆଃ ... ଏତେ ଖୁସି ଯେ
ମୁଁ ଆଜି ଧରି ରଖିପାରୁନି ।
ଆକାଶରେ ଉଡୁଥିବା ପକ୍ଷୀ ଯୋଡ଼ାଙ୍କୁ
ନିବିଷ୍ଟ ଭାବରେ ଚାହିଁ ରହିବାକୁ,

ଆଉ ପାଣିକୁ ଛୋଟ ଛୋଟ ପଥର ଫିଙ୍ଗିବାକୁ,
ପୁଣି ଅନୁପମଙ୍କ ଛାତିରେ ମୁହଁ ଗୁଞ୍ଜି ସେଇ ଶକ୍ତ ବାହୁର ବଜ୍ର ବନ୍ଧନୀ ଭିତରେ
ସବୁ ଦିନ ଲାଗି ହଜି ଯିବାକୁ
ମୋର ମନ କହୁଚି । ଆଃ ...
କିନ୍ତୁ ଏ ଯାଏଁ ସେ ଆସିଲେନି କାହିଁକି ?
ଡାଡି ତ ଅନେକ ବେଳୁ ଗଲେଣି ।
ତା' ମାନେ - ସେ କ'ଣ ଆସିବେନି । (ହସିଛି) ଆରେ ଏ ସବୁ କ'ଣ ମୁଁ ଭାବୁଚି

ବୁଧିଆ (କହି କହି ଆସିଛି)
ଦେଈ ! ଦେଈ ! (ଦେଖି)
ଏଁ ...
ତମେ ? କ'ଣ ହେଲା ଏମିତି ହସୁଚ ।

ରୀମା କାଇଁ କିଛି ନାଇଁ ତ ।
(ଲାଜେଇ ରୀମା ଝାଉଁଳି ଯାଇଛି -
ଦ୍ରୁତଗତିରେ ପଛେଇ ଯାଇଛି)

ବୁଧିଆ ଓଃ
ହଁ ... ମୁଁ ଜାଣିଛି,
ସବୁ ଜାଣିଛି,

ରୀମା : କ'ଣ ଜାଣିଛୁ ।

ବୁଧିଆ : ହଉ ହଉ, ଆଉ ଦଣ୍ଡେ ଅପେକ୍ଷା କର ।
ସବୁ ଜାଣିଯିବ ଯେ ।

ରୀମା : କ'ଣ ?

ବୁଧିଆ : କିଏ ଜଣେ ଆଜି ଏ ଘରକୁ ଆସିବେ ଯେ
ଏ ଘରଟା ସାରା କାହାକୁ ଟିକେ ବି
ଫୁରୁସତ ନାହିଁ ।

ତା ଛଡ଼ା ମୁଁ ଆସି ବୁଢ଼ା ହେଲଣି ।
ଏ ବୟସରେ କାହିଁକି ଏତେ ଖଟିବି ଯେ ?
ସିଏ ଏମିତି କ'ଣ ହେଇଗଲେ କି ?

ରୀମା (ରାଗି ଉଠି) ବୁଧିଆ ।
ଜାଣିଛୁ ?
କାହାକୁ ତୁ କଣ କହୁଚୁ ?

ବୁଧିଆ କାହିଁକି ?
ତୁମକୁ କାହିଁକି ଏତେ ବାଧି ଯାଉଚି ?
ସିଏ ତମର କିଏ କି ?

ରୀମା ବୁଧିଆ ...
ତୋର ତ ସାହସ କିଛି କମ ନୁହେଁ ମୁଁ ଦେଖୁଚି .....

ବୁଧିଆ କାହିଁକି ?
ମୁଁ ଏବେ କୋଉ ନାକରା କଥା କହିଲି ଯେ
ତମେ ଏମିତି ରାଗି ଯାଉଚ ?

ରୀମା ଠିକ୍ ଅଛି,
ରାଗି ଯାଉଚି ?
ମୁଁ କେମିତି ରାଗେ ତୁ ଏଥର ଠିକ୍ ବୁଝିପାରିବୁ ।
ଧ ... କାନ ... ଧ,

ବୁଧିଆ (କାନ ନ ଧରି ମୁରିକି ମୁରିକି ହସୁଥାଏ)
ନା ...
ମୁଁ କାନ ଧରିବିନି ।

ରୀମା : କ'ଣ ହେଲା ?
ମୋ କଥା ମାନିବୁନି,

ବୁଧିଆ : କାହିଁକି ମାନିବି ଯେ ?
ତମର ସେ ହାକିମାତି ଏ ଘରେ ଚଳିବନି ।

ରୀମା କ'ଣ ହେଲା ?

ବୁଧିଆ ହଁ, ତମର ଟିକେଟ କଟା ସରିଲାଣି ।

ରୀମା ଟିକେଟ ?

ବୁଧିଆ ହଁ,

ଆଉ ତମେ ମତେ ଆଗଭଳି

କାନଧରି ଉଠବସ କରେଇ ପାରିବନି ।

ତୁମକୁ କାନଧରି ସବୁଦିନେ

ଉଠବସ କରେଇବା ଲୋକ ଆସୁଚନ୍ତି ।

ରୀମା (ଲାଜେଇ)

ହଉ

ହେଲା ବାବା, ହେଲା ।

ତୋ ପାଖରେ ଆଜି ମୁଁ ହାର ମାନିନେଲି ।

ତୁ ଗଲୁ... ଏଠୁ ଯା ।

ବୁଧିଆ ଦେଇ ! କାନ ଧରିବିନି ?

ରୀମା ନାଇଁ

ବୁଧିଆ ଉଠବସ ହେବିନି ?

ରୀମା ହେଲା । ନାଇଁ ପରା

ବୁଧିଆ ଘୋଡ଼ା ହେବିନି ।

ରୀମା ନାଇଁ, ନାଇଁ, ନାଇଁ

ପୁଣି କ'ଣ ହେଲା

ବୁଧିଆ ତମେ ମୋ ଉପରେ ବସି ଚାବୁକୁ ମାରିବନି ?

ରୀମା ଓହୋ, ନାଇଁପରା କହୁଚି ।

ଯା ... ଗଲୁ ଏଠୁ । ଯା, (ବୁଧିଆ ଚାଲି ଯାଇଛି - ରୀମା ମନକୁ ମନ ହସି ଉଠିଚି)

(ଅନ୍ଧାର)



# ତୃତୀୟ ଦୃଶ୍ୟ

(ସୁରେନ୍ଦ୍ରଙ୍କ ଡ୍ରଇଁ ରୁମ -
ବୁଧିଆ ରୁମ୍‌ଟିକୁ ଯତ୍ନର ସହ ସଜାଡୁଚି ଫୁଲ ଚାଙ୍ଗୁଡ଼ିରୁ ବାଛି ବାଛି ଫୁଲ ନେଇ ଫୁଲଦାନୀରେ ସଜାଇବା ସମୟରେ କଲିଂ ବେଲ ବାଜିଚି)

ବୁଧିଆ ନାଇଁ ନାଇଁ ....
ଏଇନେ ଦେଖା ହେଇ ପାରିବନି, ପରେ ଆସ ।
(ପୁଣି ବେଲ ବାଜି ଉଠିଲା)
ପରଦା ଆଡ଼େଇ ଅନୁପମ ଦେଖୁଛନ୍ତି, ବୁଧିଆ ବିରକ୍ତିରେ ଓହୋ
କହିଲି ପରା ଦେଖାହେଇ ପାରିବନି
ଗୋଟେ ପରେ ଗୋଟେ ଆସି ପହଞ୍ଚିବେ ଯେ,
ବୁଢ଼ାଟାକୁ ଟିକିଏ ବି ଫୁରସତ ମିଳିବନି ହୁଁ
(ଅନୁପମ ଭିତରକୁ ପଶି ଆସିଛନ୍ତି ... ଚିହ୍ନି ନ ପାରି)
କେଡ଼େ ବାଜେ ଲୋକ ମ !
କହିଲି ପରା ଦେଖା ହେଇ ପାରିବନି ।
ଏତେ କଥା କହିଲା ପରେ ବି
ତୁମେ ଘର ଭିତରକୁ ପଶି ଆସିଲ ।
(ଅନୁପମ ସୋଫା ଉପରେ ବସିଲେ)
ହଇଓ ବାବୁ !
ତମ ସାହସ ତ କିଛି କମ୍ ନୁହଁ
(ଦେଖୁଚି) ଉଠ, ଉଠ କହୁଚି ।
(ଅନୁପମ ନିର୍ବିକାର ଭାବେ ସିଗାରେଟ ଲଗାଇଲେ) କ'ଣ ହେଲା ?
ଆସିଲ ତ ଆସିଲ, ଆରାମରେ ବସି
କାଗଜ ପଢ଼ିବା ଆରମ୍ଭ କରିଦେଲ ?
ଏଇଟା କ'ଣ ତମ ଘର ବୋଲି ପାଇଲ ନା କ'ଣ ?

ଅନୁପମ ମୁଁ ଯଦି ଠିକ୍ ସେଇଆ କୁହେ ?

ବୁଧିଆ ହଇଓ ବାବୁ !
ମୁଁ ଦେଖୁଚି ତୁମେ ମୋଟେ ଭଲ ଲୋକ ନୁହଁ ।
ନା ମୁଁ ତୁମକୁ ପାରିବିନି । ଦେଈଙ୍କୁ ଡାକେ,
ସେ ଆସିଲେ ତୁମକୁ ଠିକ୍ .....

ଅନୁପମ ଭୁଲ ତ ନୁହେଁ,
କିନ୍ତୁ, କାମଟା ତୁମ ବାବୁଙ୍କ ସଙ୍ଗରେ ।

ବୁଧିଆ ମୁଁ ଜାଣେ ।
ସେ ବୀମା ଫିମା ଆମର କିଛି ହବନି ।
କାଇଁକି ଏତେ ଦୌଡୁଚ କହିଲ ?
ଦେଖ !
ଆଜି ଆମେ ସମସ୍ତେ ଅନ୍ୟ କାମରେ ବ୍ୟସ୍ତ ।
ଯାହା କହିବା କଥା ପରେ ଆସ,
ଆଗ ଉଠିଲ ତମେ...ଉଠ ।

ଅନୁପମ ମୁଁ ବୀମା ବାବୁ ନୁହେଁ ।

ବୁଧିଆ ଓଃ, ତେବେ ତମେ କାଙ୍କୁ ଦଗିଚା କାମରେ ଆସିଚ । ତା'ବି ହେଇପାରିବନି ଆଜି ।

ଅନୁପମ : (ହସି) ନା, ତା ବି ନୁହେଁ ।

ବୁଧିଆ : ତା ହେଲେ କିଏ ତୁମେ କହୁନ ?

ଅନୁପମ (ମୁରୁକି ହସି)
ତମ ଦେଈଙ୍କୁ ପରା ଡାକିବ ବୋଲି କହୁଥିଲ ।
ଡାକୁନ ?

ବୁଧିଆ (ବିରକ୍ତି)
ଆଚ୍ଛା ଅଡୁଆରେ ପଡ଼ିଲା ମଣିଷ ।
ଦେଈ, ଦେଈ,

ରୀମା : (ଭିତରୁ) କ'ଣ ହେଲା ?
କାହିଁକି ପାଟିଟା କରୁଚୁ ?

ବୁଧିଆ — ଏଠିକି ଆସିଲେ ସିନା ବୁଝିବ ,
ସେଇ ଘର ଭିତରେ ରହି ମୋ ଉପରେ ହାକିମାତି ଦେଖେଇଲେ
କ'ଣଟା ଜାଣିବ ?
ତମେ ଆଗ ଏଠିକି ଆସିବଟି ।

ରୀମା — (ପ୍ରବେଶ) କ'ଣ ହେଲା ?

ବୁଧିଆ : ଦେଖୁନ ଦେଖ ।
ମୁଁ କେତେ ମନା କରୁଚି,
ଆଜି କାହା ସହିତ ଦେଖା ହେଇ ପାରିବନି ।
ହେଲେ ଏ ଲୋକଟା ମୋ କଥା ଶୁଣୁଚି କୋଉଠି । ଭିତରକୁ ଆସି,
ସୋଫାରେ ବସି,
ଦେଖୁନ...କେମିତି

ରୀମା — ଦେଖନ୍ତୁ ମିଷ୍ଟର;
ଆଜି ଡାଡିଙ୍କ ସହିତ ଦେଖା ହେଇ ପାରିବନି ।
ଆପଣ ଆସି ପାରନ୍ତି ।

ଅନୁପମ — ମୁଁ ଯଦି ନ ଯାଏ ?

ରୀମା — ହ୍ୱାଟ, ହାଓ ଡେଆର ୟୁ ?

ଅନୁପମ — ୟେସ୍ । ଆଇ ଡୁ ସୋ ।

ରୀମା — ବୁଧିଆ !
ଭଦ୍ର ଲୋକଙ୍କୁ କହିଦେ,
ଭଲରେ ନଗଲେ ତତେ ଟିକିଏ ପରିଶ୍ରମ କରିବାକୁ ପଡ଼ିବ ।

ବୁଧିଆ — ତା' ମାନେ ..... ମୁଁ .....

ରୀମା — ହଁ,
ଧକ୍କା ଦେଇ ଏ ଘରୁ ବାହାର କରିଦେବୁ । (ଅନୁପମ ହସି ଉଠିଚି...ରୀମା ଓ ବୁଧିଆ ଆଶ୍ଚର୍ଯ୍ୟ ହୋଇ ଚାହିଁଛନ୍ତି)

ଅନୁପମ — (ହସି ହସି)
ସତରେ ରୀମା !

ତମେ ଏଇ କେଇ ବର୍ଷ ଭିତରେ ଏତେ ବଦଳି ଯାଇଚ ?
ମତେ ବି ଚିହ୍ନିପାରୁନ ?

ରୀମା (ଚମକି ପଡ଼ି) ତା' ମାନେ .....

ଅନୁପମ (ହସିହସି) ଆରେ ମୁଁ, ଅନୁପମ ।

ରୀମା ଓଃ !
ମାଇଁ ଗୁଡ଼ନେସ । ରିଅଲି, ଆଇ ଆମ ଭେରି ସରି ଅନୁପମ ।
ମୁଁ ଯେ କେମିତି ତମକୁ ଚିହ୍ନି ପାରିଲିନି ।

ଅନୁପମ (ହସି) ଦେୟାର, ଦେୟାର ଇଜ୍ ଦି କ୍ଲାଇମାକ୍ସ (ହସ),
You Understand ?

ରୀମା କିନ୍ତୁ ଡାଡି ଯେ ତୁମକୁ ରିସିଭ୍ କରିବାକୁ ଯାଇଥିଲେ ?

ଅନୁପମ ଡାଡି, ଆଇ ମିନ୍ ଅଙ୍କଲ,
କାହିଁ ମୁଁ ତ ତାଙ୍କୁ ଦେଖିଲିନି ।

ବୁଧିଆ ବାବୁ ! କେତେ କ'ଣ ମୁଁ କହି ଦେଇଚି,
ରାଗିବନି ବାବୁ ! ହେଲେ ବାବୁ
ତମେ ଏଡ଼ିକି ଟିକିଏ ହେଇଥିଲ ଦେଖିଥିଲି ।
ସେଇ କାଳରୁ ଦେଖିନାଇଁ ।
କେମିତି ଚିହ୍ନିବି କହିଲ ବାବୁ !
ବାବୁ ଆମର ଏଇନେ ଆସି ଯିବେନି ! (ବାହାରୁ କାର ଅଟକିବାର ଶବ୍ଦ ଶୁଣି) ହେଇପରା, ବାବୁ ଆଇଲେଣି, ମୁଁ ଯାଏ । ତେଣେ କାମ ଅଛି । (ପ୍ରସ୍ଥାନ)

ଅନୁପମ କିନ୍ତୁ
ତମେ ରିସିଭ୍ କରିବାକୁ ଗଲନି ରୀମା ... କଣ ରାଗିଚ ?

ରୀମା : ତମ ଉପରେ ରାଗିବା ଅଧିକାର ମୋର ବା ଆସିଲା କୋଉଠୁ ?

ଅନୁପମ : ଓଃ ...
ସେଇ ପୁରୁଣା ଅଭିମାନ ।

ସୁରେନ୍ଦ୍ର : (ପ୍ରବେଶ) ଆରେ ବାପରେ ବାପ,
ଷ୍ଟେସନଟା ଯାକ ଖୋଜି ଖୋଜି ମୁଁ ନୟାନ୍ତ,

ଆରେ ଅନୁପମ ! ତମେ ଆସି ଏଠି please be seated.
ବୁଝିଲୁ ମା,
ବାଟରେ ଦେହଟା ଟିକିଏ ଖରାପ ଲାଗିଲା,
ସେଇଥିପାଇଁ ଟିକେ ଡେରି ହେଇଗଲା । (ଅନୁପମ ପାଦଛୁଇଁ ପ୍ରଣାମ କରୁଛି)

ରୀମା   କାହିଁକି ?
ସକାଳୁ ଆଉ ଦି ପ୍ୟାକେଟ ସନ୍ଦେଶ ଲୁଚେଇ ଖାଇଲନି ?

ସୁରେନ୍ଦ୍ର   (ହସ) ଓକେ, ଓକେ My Child.
ଏ ଭୁଲ ଆଉ ହବନି ।
ଅନୁପମ ! ତମେ ଆଗ ଫ୍ରେସ ହେଇପଡ଼ । ବ୍ରେକଫାଷ୍ଟ ପରେ ମୋ ଫାରମ୍ ହାଉସ୍ ବୁଲିଯିବ ।
ମୋ ସୁନାରୀ ପୋଖରୀର ନେଟିଙ୍ଗ୍ ଦେଖିବା,
ନରେନ୍ଦ୍ର ନଗର ଯିବା ।
ହସପିଟାଲ ବିଲଡିଂର ପ୍ରୋଗ୍ରେସ୍ ଦେଖିସାରିବା ପରେ ଯାଇ ଲଞ୍ଚ ।
ନା କଣ କହୁଚ ଅନୁପମ ?

ଅନୁପମ   ଠିକ୍ ଅଛି ।

ରୀମା   ଡାଡି ତମେ ବି ଯା ଭିତରେ ଫ୍ରେସ୍ ହେଇପଡ଼ ।

ସୁରେନ୍ଦ୍ର   ଓକେ । (ପ୍ରସ୍ଥାନ)

ଅନୁପମ   ଅଙ୍କଲଙ୍କ ଫୋନ ପାଇ,
ବାପା ଖୁବ୍ ବ୍ୟସ୍ତ ହେଇଗଲେ ।
ମତେ ବାଧ କଲେ ଆଜି ଟ୍ରେନରେ ଆସିବାକୁ ।
ମନେ ହେଉଛି ...
ସେମିତି ତ କିଛି ଦେହ ଖରାପ ହେଇନି ଅଙ୍କଲଙ୍କର ।

ରୀମା   ନା ...
ଡାକ୍ତର ଅଙ୍କଲ ପ୍ରତିଦିନ ତାଙ୍କ ବି.ପି. ଚେକ୍ କରୁଛନ୍ତି ।
ଜାଣ ଅନୁପମ,
ଡାଡି ତମକୁ ଦେଖି କେତେ ଖୁସି ।

ଅନୁପମ ଆଉ ତମେ ?

ରୀମା ଆଜି ମୁଁ ଯେ କେତେ ଖୁସି

ତା' ତୁମେ

ଅନୁପମ : ଆଇ ନୋ, ଆଇ ନୋ ....

ରୀମା ହଁ

ଅନୁପମ ! ତା' ନ ହେଇଥିଲେ ମୋ କଥା ତମର କଣ କେବେ ମନେ ପଡ଼ି ନ ଥାନ୍ତା ।

ଅନୁପମ ଓଃ, ଆଇ ଆମ ସରି ମାଇଁ ଡ଼ିଅର ।

ଏବେ ମତେ ଟିକେ ଫ୍ରେସ ହବାକୁ ଅନୁମତି ଦିଅ ।

ରୀମା ଓଃ ... ୟେସ ହ୍ୱାଇ ନଟ୍ । କମ୍ ଅନ୍ । (ହାତ ଧରାଧରିହୋଇ ଚାଲିଗଲେ)

(ଅନ୍ଧାର)



# ଚତୁର୍ଥ ଦୃଶ୍ୟ

[ସୁରେନ୍ଦ୍ରଙ୍କ ଡ୍ରଇଂ ରୁମ୍ .... ଅନୁପମ ଇଂରାଜୀ ସମ୍ବାଦ ପତ୍ର ଖେଳାଉଛନ୍ତି... ସୁରେନ୍ଦ୍ର Magazine ଧରି ପଢୁଛନ୍ତି ... ମଝିରେ ମଝିରେ କଥା ହଉଛନ୍ତି]

ସୁରେନ୍ଦ୍ର : ରାଧାକାନ୍ତ ସହ ଯାହା ଫୋନ୍‌ରେ କଥା ହଉଛି

ଅନେକ ଦିନ ହେବ ଦେଖା ହେଇନି - ପ୍ରାୟ ତାର transfer ହେବା ପରଠୁଁ

ବେଳେ ବେଳେ ଇଚ୍ଛାହୁଏ ରାଧାକାନ୍ତକୁ କହି ତୁମକୁ ଡକେଇବି ।

କିନ୍ତୁ !

କାଳେ ତୁମ ପଢ଼ା ପଢ଼ିରେ Disturb ହେବ ....

ସେଇଥି ପାଇଁ .....

ଅନୁପମ ଆପଣ ମଝିରେ ବାପାଙ୍କ ସହ କୋଉଠି

ଦେଖା ହେବା କଥା ଥରେ ବାପା କହୁଥିଲେ ।

ସୁରେନ୍ଦ୍ର : ହଁ,

ତୁମ ପରୀକ୍ଷା ଥାଏ ଅଳ୍ପଦିନ

ତମ Hostel କୁ ଯାଇଥିଲେ ତୁମ ସହ ଦେଖାହେଇଥାନ୍ତା

ହେଲେ ତମର Final test ଲାଗି ....

ମୁଁ ଉଚିତ୍ ମନେ କଲିନି ....

ଆଉ ରାଧାକାନ୍ତ କେମିତି ଅଛି ?

ଅନୁପମ : ଭଲ ଅଛନ୍ତି .....

ସୁରେନ୍ଦ୍ର : Retirement ପରେ ସମୟ କେମିତି କଟୁଛି ?

ଅନୁପମ : Retire ପରେ । ଗାଁରେ ଆମର ବିରାଟ

ଫାର୍ମ ହାଉସ୍ । ବେଳେ ବେଳେ ଇଛା ହେଲେ

ସେଠିକି ଯାଉଛନ୍ତି ....

ସେ ସବୁର ଦେଖା ଚାହାଁ କରି .....

ସୁରେନ୍ଦ୍ର ବାସ୍ତବିକ ସେଇଥିରେ ହିଁ ସ୍ୱର୍ଗୀୟ ଶାନ୍ତି ଅଛି ....
ମୋ ପରି ଏ ମିଛ ଜଞ୍ଜାଳ ଭିତରେ ଘାଣ୍ଟିହେଇ କେବଳ ଅଶାନ୍ତି
କିଣିବା ଯାହା ସାର ....
(ବୁଧିଆ ଆସିଛି)

ବୁଧିଆ ଘରଗକୁ ନିଶୁଣୀ ନାଇଁ ନା
ବଡ଼ ଲୋକକୁ ଉତ୍ତର ନାଇଁ ।
ଆଉ ବୁଧିଆ ଯଦି ଟିକେ ଭୁଲ କରି ବସିଥାଆନ୍ତା
ଏଇନେ ତମ୍ଭୁ ତୋଫାନ ଉଠି ଯାଆନ୍ତା
ହେଲେ ନିଜ ଦୋଷ କ'ଣ ଜଣା ପଡୁଛି ?

ସୁରେନ୍ଦ୍ର କ'ଣ ହେଲା ?
ହଠାତ୍ ତୋ ସ୍ୱରଟା ଇମିତି ପଞ୍ଚମକୁ
ଉଠିଗଲା କାହିଁକି ?

ବୁଧିଆ ନାଇଁ ପିଲାଲୋକ ।
ଏତେ ଆଡୁ ସକାଳୁ ବୁଲେଇ ଆଣିଲଣି
ଘରକୁ ଆସି ଗପ ପେଡ଼ି ପୁଣି ମେଲେଇଦେଲ
କାଇଁକି ଦୁଃଖସୁଖ ହେବାକୁ କ'ଣ ବେଳ
ବଳେଇ ଯାଉଚି -

ସୁରେନ୍ଦ୍ର (ହସ) ହଉ ଗଲୁ
ଅନୁପମ ଫ୍ରେସ୍ ହେଇଯାଆନ୍ତୁ
ତୋର ସବୁ କାମ ସରିଛି ତ ?

ବୁଧିଆ ସେ କାମ,
ଏତେବେଳଯାଏ ବାକି ନାଇଁ ମ ବାବୁ ?
ସବୁ - ସବୁ ରେଡି ।

ସୁରେନ୍ଦ୍ର ବାଃ ... ବାଃ ....
ଆଜି କ'ଣ ବୁଧିଆ ଇଂରାଜୀ କହିଲାଣି -
ବୁଝିଲ ଅନୁପମ !

ଏ ଜାନୁଆର୍‌ଟା ନାଁ ସିନା ବୁଧିଆ
କିନ୍ତୁ ଗୋଟେ Class one idiot

ବୁଧିଆ ସେମିତି ଆଉ ଗାଳି ଫାଳି ଦିଅନି, ବାବୁ !

ସୁରେନ୍ଦ୍ର କାହିଁକି ?
ଅନୁପମକୁ ଦେଖି କ'ଣ ତୋ ସାହସ ବଢ଼ିଗଲାଣି କିରେ ?

ବୁଧିଆ ହେଇଟି ବାବୁ !
ଯେତିକି ଦିନ ଧମକଉଥିଲ ସେତିକି
ଏଣିକି ନୁହେଁ ....
ମୁଁ ପରା ଏ ଡାକତର ବାବୁଙ୍କ ପାଖରେ
ଆମ ନୂଆ ଡାକତର ଖାନାରେ, କୁମ୍ପାଉଣ୍ଡର ହେଇ ରହିବି ....
(ଅନୁପମ ଓ ସୁରେନ୍ଦ୍ର ହସିଲେ)

ସୁରେନ୍ଦ୍ର କିରେ କହୁଥିଲୁ ପରା
କାଶୀ କି ବୃନ୍ଦାବନ ଯାଇ ମାଳ ଗଡ଼େଇବୁ
କାମଧନ୍ଦା ସବୁ ଛାଡ଼ି ଦେବୁ -
ଏବେ କ'ଣ କହିଲୁଣି କୁମ୍ପାଉଣ୍ଡରୀ କରିବୁ ....

ବୁଧିଆ ଏକା କଥା ବାବୁ !
କାଶୀ ବୁରୁନ୍ଦାବନ ଯାଇ ମାଳ ଗଡ଼େଇଲେ
ଯେତିକି ଧରମ ହେବ
କୁମ୍ପାଉଣ୍ଡର ହେଇ ରୋଗୀ ସେବା କଲେ
ତା ଠୁଁ ବେଶୀ ଧରମ ହେବ ।

ସୁରେନ୍ଦ୍ର ଆଚ୍ଛା ତୁ ଯା
ଦି କପ୍ କଫି ନେଇ ଆସିବୁ ....

ବୁଧିଆ ଫେରେ ତ ସେଇ କଥା
ଡାକତର ବାବୁ ପରା ଫ୍ରେସ୍ ହେବେ

ସୁରେନ୍ଦ୍ର ଓଃ
ତୁ ଏତେ ବ୍ୟସ୍ତ ହୋଇପଡୁଛୁ କାହିଁକି ?

ବୁଧିଆ : ସେଣେ କଚେରି ଘରେ
କେତେ ଆଡୁ କେତେ ଲୋକ
କେତେ କାମ ନେଇ, ତମକୁ ଅପେକ୍ଷା କଲେଣି ....
ଗପିବ ଯେ କେତେବେଳ କରିବ ....
ତମେ ଯାଅ ବାବୁ କଚେରି ଘର
ହେଲେ ଡାକ୍ତରଙ୍କ କଥା ମୁଁ ବୁଝିବି ....

(ଉଭୟେ ହସ ରୀମା ଆସିଛି)

ରୀମା ମୁଁ କଫି ନେଇ ଆସିଚି ....
ତୁ ରୋଷେଇ ଘରକୁ ଯାଇ ଦେଖେ ....

(ଅନ୍ଧାର)



# ପଞ୍ଚମ ଦୃଶ୍ୟ

(ସୁରେନ୍ଦ୍ରଙ୍କ ଘର ଭିତରର ଦୃଶ୍ୟ - ବୁଧିଆ ଡାଇନିଂ ଟେବୁଲରେ ଗୋଟି ଗୋଟି କରି ବଢା ବଢି କରୁଛି । ଅନେକ item ଦେଇଙ୍କ ଉପରେ ଟିକିଏ ବିରକ୍ତି ହୋଇଚି)

ବୁଧିଆ    ବାପ ଝିଅ ଦୁହେଁ ଏକୁ ଆରକ୍
କେହି କାହାରିକି ଊଣା ନୁହେଁ .....
ଡାକ୍ତର ବାବୁଙ୍କୁ ଭୋକ ହବଣି ....
କଥା କୋଉଠୁ ସରୁଛି ଯେ
ସହଳ ଆସିବେ ....

(ରୀମା ଆଉ ଅନୁପମ ଆସିଛନ୍ତି)

ଅନୁପମ    କ'ଣ ଏ ଟେବୁଲ୍ ଭର୍ତ୍ତି ହେଇଯାଇଛି ....
ଏକାବେଳେକେ ଏତେ ସବୁ କିଏ ଖାଇବ ?

ରୀମା    କିଏ ଖାଇବ ?
ଆମ ଘରେ ତ ନିଇତି ଏ ସବୁ ହୁଏ ....

ଅନୁପମ    କିନ୍ତୁ ... କାହିଁକି ?
ତମ ଡାଡିଙ୍କର କ'ଣ ପ୍ରତିଦିନ
ଏ ସବୁ ?

ବୁଧିଆ    ବାବୁଙ୍କର ଆମର ତ ଶୁଆ ଶାରୀଙ୍କ ଆହାର ।
ମେଲେଟାରୀ ଲୋକ .... ପୁଣି ଜମିଦାର ଘରର ପୁଅ
ଆଦବ କାଇଦା ଏଠି ଭିନେ ....
ସେ ଖାଇବାରେ ଯେତେ ସୁଖ ପାଆନ୍ତିନି
ଖୁଆଇବାରେ ତା'ଠୁଁ ବେଶୀ ସୁଖ ପାଆନ୍ତି ।
ଦିନ୍ ପରା ଏ ଖଞ୍ଜାରେ
ଶହ ଶହ ପତର ପଡୁଛି ....

ଅନୁପମ    ଧନରେ ଭଗବାନ ଖୁବ୍ ବଡ଼ କରି ରଖିଛନ୍ତି
ଯେତେବେଳେ, ଏ ସବୁ ତ ହେବା ସ୍ୱାଭାବିକ ....
ପୁରୁଣା ଖାନଦାନୀ ଘରର ଏଇ ଅହଂକାର

ଏବେ ବି ରହିଛି
କିନ୍ତୁ ମତେ ଆଶ୍ଚର୍ଯ୍ୟ ଲାଗୁଚି .... ଜଣେ ମିଲେଟାରୀ କର୍ଣ୍ଣେଲଙ୍କ
ଘରେ ସେଇ ପରଂପରା
କିଛି ବଦଳି ନାହିଁ
ଅଯଥାରେ ଏତେ ବିନର୍ବ୍ୟୟ କରୁଛନ୍ତି .... କାହିଁକି ?
ଧର୍ମ ଅର୍ଜିବାକୁ .... ଦାନ କରିବାକୁ ଯଦି ମନ
ନିଜର ସ୍ୱର୍ଗତା ସ୍ତ୍ରୀ ନାଁ ରେ ଅନାଥାଶ୍ରମ କି
ଦାତବ୍ୟ ଚିକିତ୍ସାଳୟ .....

ବୁଧିଆ ଡାକତରଖାନା ତ ଖୋଲାହବ ....
ଶ୍ରୀରାମପୁରରେ, ଆଗରୁ କେବେଠୁଁ
ଅନାଥାଶ୍ରମ ଖୋଲାସରିଛି ।

ରୀମା ସଂଧ୍ୟାରେ ଆମର ଶ୍ରୀରାମପୁରରେ ମିଟିଂ ରହିଚି
ଆଜିର Programme ସେଇଠି ଡାଡି ଠିକ୍ କରିଛନ୍ତି ।

ଅନୁପମ ମୁଁ କିଛି ବୁଝିପାରୁନି .... କର୍ଣ୍ଣେଲ ସାହେବଙ୍କ
ଆଦିଅନ୍ତ ବୁଝିବା ବୋଧହୁଏ ମୋ ପକ୍ଷେ କଷ୍ଟକର ....

ରୀମା ନା ..... ମୋ ଡାଡି !
ଗୋଟେ ବିରାଟ ବରଗଛ ଅନୁପମ ।
ଘଞ୍ଚ ଡାଳ ପତ୍ର ମେଲିଦେଇ ଗୋଟାଏ ବିସ୍ତୀର୍ଣ୍ଣ
ଅଞ୍ଚଳକୁ ଛାଇ ଯାଇଛି ..... କେତେ ଉଡ଼ନ୍ତା ପକ୍ଷୀ
ପଥଚଲା ପଥିକଙ୍କୁ ନିଜ ଛାଇ ତଳେ ଆଶ୍ରା ଦେଇଛି -
ତଥାପି ଗର୍ବ ନାଇଁ - ଛନ୍ଦ ନାହିଁ - ଛଳନା ନାଇଁ
ଅକୁଣ୍ଠ ଭାବରେ ଛାଇ ପ୍ରଦାନ କରିବାରେ ଜୀବନରେ
ସାର୍ଥକତା ରହିଛି ।
ଅନୁପମ ।

ବୁଧିଆ : ଆଉ ଗପନି .... ଦେଈ ।
ଡାକ୍ତରବାବୁ ଟିକିଏ ଶାନ୍ତିରେ ଖାଆନ୍ତୁ ....

(ଅନ୍ଧାର)

●

## ଷଷ୍ଠ ଦୃଶ୍ୟ

(ଅନୁପମର ବେଡ୍‌ରୁମ୍ ।
ସ୍ୱଚ୍ଛ ଆଲୋକ । ଅନୁପମ ଶୋଇଚି
ରୁମ ଭିତରକୁ ପାଦ ଚିପି ଚିପି ପଶିଚି
ରୀମା, ଅନୁପମକୁ ନିରେଖି ଦେଖୁଛି ।
ଅନୁପମ ପ୍ରତି ରୀମାର ଦୁର୍ବଳତା ବଢ଼ି ଉଠିଛି ।
ତାକୁ ଛୁଇଁବାକୁ ହାତ ବଢ଼େଇଛି ରୀମା !
ପାରିନି ।
ହାତ ଫେରେଇ ଆଣିଚି । କଡ଼ ଲେଉଟେଇଚି ଅନୁପମ
ରୀମା ସତର୍କ ହୋଇ ଦୁଇପାଦ ପଛକୁ ଫେରି ଯାଇଛି ।
ଅନୁପମକୁ ରୀମା ଆଉ ନିଜକୁ ସଂଯତ କରି ପାରିନି ।
ପାଖ ର୍ୟାକ୍‌ରୁ ଶାଲଟିଏ ଆଣି ଅନୁପମକୁ ଘୋଡ଼େଇ ଦେଇଚି ।
ନିଜ ଅଜଣାତରେ ଅନୁପମର ମୁହଁ ପାଖରେ ନିଜ ମୁହଁକୁ ନେଇ
ଦେଖୁଥିବା ବେଳେ ହାତ ଅନୁପମ ଉପରେ ବାଜି ଯାଇଛି
ଅନୁପମର ନିଦ ଭାଙ୍ଗିଯାଇଚି ....
ରୀମା ଅନୁପମ ଠାରୁ ଦୂରେଇ ଯାଇଚି
ରୀମାକୁ ଏମିତି ଅବସ୍ଥାରେ ଦେଖି ଆଶ୍ଚର୍ଯ୍ୟ ତଥା ସନ୍ଦିହାନ
ହୋଇଉଠିଚି ଅନୁପମ)

ଅନୁପମ — ରୀମା !
ତମେ ? ଏଠି ?
କ'ଣ ହେଇଚି

ରୀମା — (ଅପ୍ରସ୍ତୁତ ଅବସ୍ଥାରେ)
ନାଇଁ କିଛି ନାଇଁ

ଅନୁପମ — କ'ଣ Uncle ଙ୍କର କିଛି ହେଲାକି ?
ସହଜେ ସେ ଡାଇବେଟିକ୍ ପେସେଣ୍ଟ

ରୀମା : ନାଇଁ ନାଇଁ, (ତାଡି ଙ୍କର) କିଛି ହେଇନି ।
ଅନୁପମ ତା' ହେଲେ ଏତେ ରାତିରେ ତମେ
ଏକା ଏକା ମୋ Bedroom ରେ ?
ରୀମା : ନାଇଁ ... ଏମିତି .....
ସେ କିଛି ନୁହଁ ।
ଅନୁପମ Don't be so Silly.
ମୋ ଜାଗାରେ ଆଉ କିଏ ଥିଲେ କଣ ଭାବିଥାନ୍ତେ କହିଲ ?
No, No, it is quite indecent.
ରୀମା : ମାନେ ?
ତମେ ମତେ ସନ୍ଦେହ କରୁଚ ଅନୁପମ,
ଅନୁପମ : ହଁ,
ଜଣେ ଅବିବାହିତା ଝିଅ ସମସ୍ତଙ୍କ ଅଗୋଚରରେ ଲୁଚି ଲୁଚି
ଏମିତି ଆସିବାର କାରଣ କ'ଣ ?
ରୀମା : ତା' ମାନେ ?
ତମେ ମୋ ଚରିତ୍ର ଉପରେ ଆକ୍ଷେପ କରୁଚ ?
ଅନୁପମ : ମୁଁ ଯଦି ଠିକ୍ ସେଇଆ କହେ ।
ରୀମା : କ'ଣ ଭାବୁଚ ତମେ ?
ରୀମା କଣ ଗୋଟେ କାଠ କଣ୍ଢେଇ ?
ତମର ମନେରଖିବା ଉଚିତ
କୋଡ଼ିଏ ବର୍ଷ ତଳୁ ଆମର ବାହାଘର ସରିଚି ?
ଅନୁପମ : What ?
ରୀମା : ଏତେ ଶୀଘ୍ର ଭୁଲିଗଲ ?
ଆମର ସେଇ କଣ୍ଢେଇ ଖେଳ
ତମେ ବର ଆଉ ମୁଁ କନିଆଁ,
କିଛି ତମର ମନେ ପଡୁନି ?
ଅନୁପମ : (ହସିଛି) ସେ ସବୁ ପିଲା ଦିନର ଖେଳ ।
ରୀମା !

ତାକୁଇ ଧରିବସି ତମେ ଶେଷକୁ ଏତେ ତଳକୁ ଚାଲିଗଲ ?

ରୀମା ତମ ପାଇଁ ସବୁ ହଳାହଳ ବିଷକୁ
ମୁଁ ଆକଣ୍ଠ ପାନ କରିବାକୁ ପ୍ରସ୍ତୁତ ଅନୁପମ ।

ଅନୁପମ It has no meaning.

ରୀମା ମୁଁ କିନ୍ତୁ
ସେଇ କଣ୍ଢେଇ ଖେଳ ବାହାଘରକୁ
ମୋର ବାସ୍ତବ ଜୀବନରେ ରୂପାନ୍ତରିତ କରିବାକୁ ଚାହେଁ ।

ଅନୁପମ ରୀମା !

ରୀମା ହଁ, ଅନୁପମ ।
ତମର ମୋର ବାହାଘର ସରିଯାଇଚି ।

ଅନୁପମ No, No, it is impossible

ରୀମା ମତେ ଯେତେ ଭୁଲାଇବାକୁ ଚେଷ୍ଟା କଲେବି ତମେ ମୋର ....
ସବୁ ଦିନ ପାଇଁ ମୋର ....

ଅନୁପମ Stop it, stop it I say. I am disgusted,
You must remember you are simply my friend.

ରୀମା ଆଉ କିଛି ନୁହେଁ ।

ଅନୁପମ ସେଇ ଆଉ କିଛି କି ନେଇ ମୁଁ ଯଦି ତମ ଚରିତ୍ର ଉପରେ ଆକ୍ଷେପ କରେ ।

ରୀମା ଆକ୍ଷେପ (ହସିଛି)

ଅନୁପମ ସେ ଆକ୍ଷେପକୁ ମୁଁ ହସି ହସି ସ୍ୱୀକାର କରିନେବି ।
What do you mean ?

ରୀମା : ଅନ୍ଧ ପୁଚୁଳୀ ଖେଳରେ
ଲୁଚୁକାଳିର ଖୋଜିଲା ଖୋଜିଲା ଆଖିରେ
ବୋହୂ ବୋହୂକା ଦୌଡ଼ରେ
କଣ୍ଢେଇ ବେଦିରେ କେତେଥର ବାହାଘର
ତାହାଛଡ଼ା ତମ ବାପା ଆଉ ମୋ ଡାଡିଙ୍କ ଉଚ୍ଚାଟ ହସକୁ

ତମେ କଣ ଭୁଲି ଯାଉଛ ଅନୁପମ, ତମେ ମୋ ସାଙ୍ଗରେ ଥଟ୍ଟା ହଉଚ ଅନୁପମ

ଅନୁପମ ନା .... ନା ରୀମା ଆଦୌ ଥଟ୍ଟା ନୁହେଁ ।

ପିଲା ଦିନର ସେଇ କଣ୍ଢେଇ ବାହାଘରକୁ

ମୋ ଜୀବନର ଗୋଟେ ନିଷ୍ପତ୍ତି ବୋଲି

ମୁଁ ମାନି ନେଇ ପାରିବିନି ।

ରୀମା ତା' ହେଲେ

ମୋର ସବୁ ସ୍ୱପ୍ନ

ଏମିତି କଣ ପାଣି ଫୋଟକା ଭଳି ମିଳେଇଯିବ ।

ଅନୁପମ I am sorry ରୀମା

ତମର ଏ ସ୍ୱପ୍ନକୁ ମୁଁ ସ୍ୱୀକାର କରିପାରିବିନି

ରୀମା କିନ୍ତୁ କାହିଁକି ?

କଣ ପାଇଁ ତମର ମୋ ଉପରେ ଏପରି ଉପେକ୍ଷା ।

ଅନୁପମ ସବୁ କାହିଁକିର ଉତ୍ତର

ଖୋଜିବାକୁ ଯାଇ ଆମେ ହୁଏତ

ଦିଗ୍‌ହଜା ହେଇ ଯାଇଥିବା ।

ରୀମା ଅନୁପମ ! ତା ମାନେ ?...

ଅନୁପମ ମାନେ ...

କିନ୍ତୁ ...

ଏ ସବୁର ଅର୍ଥ ଖୋଜିବାକୁ ଗଲେ

ଅନେକ ଗୋଲକ ଧନ୍ଦା ସୃଷ୍ଟି ହେବ ।

ମୁଁ ଚାହେଁନା

ଆମେ ଦି ଜଣ ସେ ଗୋଲକ ଧନ୍ଦା ଭିତରେ ଛନ୍ଦି ହେଇଯିବା ।

ରୀମା : ତା ମାନେ ?

ତମେ କଣ କହିବାକୁ ଚାହଁ ?

ଅନୁପମ : କହିବାର କିଛି ନାହିଁ ।

କାଲି ସକାଳୁ ମୁଁ ଚାଲିଯିବି ।

ରୀମା ଅନୁପମ ?

ଅନୁପମ ଏ ମଣିଷ ବଡ଼ ବିଚିତ୍ର ରୀମା ।

ସମୟର ସୁଅରେ କେତେବେଳେ କୁଆଡ଼େ ଟାଣି ହେଇଯାଏ ।

ସେ ନିଜେବି ବୁଝିପାରେନା ।

Excuse me I am undone, Really I am undone

ରୀମା ଅନୁପମ । !

(ଅନ୍ଧାର)



# ସପ୍ତମ ଦୃଶ୍ୟ

[ ସୁରେନ୍ଦ୍ରଙ୍କ ଘର - ସୁରେନ୍ଦ୍ର ସୋଫା ଉପରେ ବସିଛନ୍ତି
ଉଠିବାକୁ ଚେଷ୍ଟା କରିବା ବେଳେ
ତାଙ୍କୁ ଜଗି ରହିଥିବା ବୁଧିଆ ବ୍ୟସ୍ତ ବିବ୍ରତ ହୋଇ ପଡ଼ିଚି ]

ସୁରେନ୍ଦ୍ର (ଉଠିବାକୁ ଚେଷ୍ଟାକରି)
ଆଃ .... ଆଃ ....

ବୁଧିଆ କାହିଁକି ଉଠୁଚ କହିଲ ବାବୁ !
ମୁଁ ପରା ଅଛି । ମତେ କହୁନ ?

ସୁରେନ୍ଦ୍ର ନାଇଁରେ ବୁଧିଆ ।
ବଡ଼ ବିରକ୍ତ ଲାଗିଲାଣି !

ବୁଧିଆ ନାଇଁ ....
ମୁଁ ତମର କୌଣସି କଥା ଶୁଣିବିନି ।
ତମେ ଆଗ ମୋ କଥା ମାନି
ଏ ଓଷଦଟା ପିଇଦିଅ । ଟିକିଏ ଭଲ ଲାଗିବ ।

ସୁରେନ୍ଦ୍ର : ଚୋପ୍ !
ତୁ ମୋ ଉପରେ ହାକିମିତି ଦେଖଉଚୁ ?
ମୁଁ ସେ ଓଷଦ ଖାଇବିନି ।
କାଇଁକି ଖାଇବି ?
କ'ଣ ହେଇଚି କି ମୋର ?
ଆଇ ଆମ କ୍ୱାଇଟ୍ ଓକେ ।

ବୁଧିଆ : ନାଇଁ - ମୁଁ ଆଉ ପାରିବିନି ।
ଯାଏ, ଦେଈଙ୍କି ଡାକେ ।
ସେଇ ଆସିଲେ ତମକୁ ଠିକ୍ ଶାସନ କରିଦେବେ ।

ସୁରେନ୍ଦ୍ର : ହଁ, ହଁ - ରୀମାକୁ ଡାକ୍ ।
ମୁଁ ତାକୁ ଆଜି ନିଛେ ପଚାରିବି,

ବୁଧିଆ ହଉ ହେଲା
ମୁଁ ଦେଇଙ୍କୁ ଡାକି ଦଉଚି ।
ହେଲେ ତମେ ଟିକିଏ ଶୋଇ ପଡୁନ ।
ସୁରେନ୍ଦ୍ର : ଚୋପ୍ । ପୁଣି ମାମଲତି ଦେଖେଇଲା । କହିଲି ପରା ଡାକ ତାକୁ ।
[ ବୁଧିଆ ନିରୁପାୟ ହେଇ ରୀମାକୁ ଡାକିଚି ]
ବୁଧିଆ ହଉ ହେଲା । ଦେଇ, ଦେଇ, ଦେଇ ମ ।
ରୀମା [ ଭିତରୁ ] କଣ ହେଲା କିରେ ବୁଧିଆ ?
ବୁଧିଆ ଇଆଡ଼େ ଘର ବୁଡ଼ି ପାଣି ଆଣ୍ଠୁଏ ହେଲାଣି ।
ଟିକିଏ ଇଆଡ଼େ ଆସ ।
ରୀମା (ପ୍ରବେଶ) କ'ଣ ହେଲା ?
ବୁଧିଆ : ସମ୍ଭାଳ, ସମ୍ଭାଳ ଏବେ ବଡ଼ ବାବୁଙ୍କୁ । ମୁଁ ଆଉ ପାରିବିନି । ଓଷଦ ଖାଇବାର ନାଁ ଗନ୍ଧ ଧରୁନାହାନ୍ତି । ମୁଁ ଯାଉଚି ....
(ପ୍ରସ୍ଥାନ)
ରୀମା (ସୁରେନ୍ଦ୍ରଙ୍କ ପାଖକୁ ଯାଇ) ଡାଡି - ତମେ ଏମିତି ପିଲାଙ୍କ ଭଳି ହେଲେ ମୁଁ ତୁମକୁ କେମିତି ବୁଝେଇବି ।
ସୁରେନ୍ଦ୍ର କାଇଁକି,
କଣ ପାଇଁ ମୁଁ ମେଡ଼ିସିନ୍ ଖାଇବି ? (ଉଠି)
ହେଲେ, ଅନୁପମ ସବୁ ଜାଣିବି
ଦିନେ ହେଲେ ମତେ ଦେଖିବାକୁ ଆସିନାହିଁ ?
ରୀମା : ଓହୋ .... ଡକ୍ଟର ଅଙ୍କଲ ପରା ଆସୁଚନ୍ତି ।
ସିଏ ଆସି ଆଉ ଅଧିକ କ'ଣ କରିବେ ଯେ ?
ସୁରେନ୍ଦ୍ର ନା -
ତା ନୁହେଁରେ ମା ! ହେଲେ ମୁଁ ଶୁଣିଲି ....
ରୀମା : କ'ଣ ?
ସୁରେନ୍ଦ୍ର : ଅନୁପମ ଏ ବାହାଘର ପାଇଁ ରାଜି ନୁହେଁ ?
ଏ କଥା କଣ ସତ ?
ରୀମା (ହସ) ଡାଡି ତୁମକୁ ଏକଥା କିଏ କହିଲା ?

ସୁରେନ୍ଦ୍ର ଯିଏ ବି କହୁ,
ମୁଁ କିନ୍ତୁ ତୋ ମୁହଁରୁ ଶୁଣିବାକୁ ଚାହେଁ ।
ରୀମା (ହସି) ଓହୋ ଡ଼ାଡ଼ି -
କାହିଁକି ଏ ଫାଲତୁ କଥାରେ
ମୁଣ୍ଡ ଖେଳଉଚ କହିଲ ?
ତମେ ଯିବଟି,
ଭିତରକୁ ଯାଇ ରେଷ୍ଟ ନିଅ । (ବୁଧିଆକୁ ଡ଼ାକି)
ବୁଧିଆ, ବୁଧିଆ ।
ସୁରେନ୍ଦ୍ର ଆରେ ମା ତାକୁ କାହିଁକି ଡାକୁଚୁ ! ମୁଁ କଣ....
ରୀମା ସେ କଥା ମୁଁ ଜାଣେ । ତମେ ଚୁପ ରୁହ ।
(ଏହି ସମୟରେ ପ୍ରବେଶ କରିଛି ବୁଧିଆ)
ବୁଧିଆ ମତେ ଡାକିଲେ ଦେଇ ?
ରୀମା ହଁ ଶୁଣ
ଡାଡିଙ୍କୁ ଘର ଭିତରକୁ ନେଇ ଯା ।
ମନେ କରି ତାଙ୍କୁ ଓଷଦ ଦେବୁ । ମନେ ରହିଲା ।
ବୁଧିଆ : ହେଲେ ସେ ମୋ କଥା ଶୁଣିଲେ ତ ?
ରୀମା ଚୁପ, ତାଙ୍କ ବାପା ଯିଏ ସେ ଶୁଣିବ ।
ଓ ମାଇଁ ସୁଇଟ ଡାଡି,
ତମେ ମୋ କଥା ରଖିବନି ?
ଓଷଦ ନ ଖାଇଲେ ତମ ଦେହ କିମିତି ଭଲ ହେବ ଯେ ।
ସୁରେନ୍ଦ୍ର : ହଉ ହେଲାରେ ମା .... ହେଲା ।
ତୋ କଥା ମୁଁ କ'ଣ କେବେ ଭାଙ୍ଗି ପାରିଚି ।
ହେଲେ ଅନୁପମ ....
ରୀମା ଓହୋ ତାଙ୍କ କଥା ତମେ ମୋ ଉପରେ ଛାଡ଼ିଦିଅ । ସିଏ ଯେମିତି
ହେଲେ ତମକୁ ଦେଖିବାକୁ ଆସିବେ O.K.
ନୂଆ ନୂଆ କ୍ଲିନିକ୍ ଖୋଲିଛନ୍ତି ତ .... ସେଇ ବ୍ୟସ୍ତତା ଭିତରେ
ତମ ଦେହ ଖରାପ କଥା ସେ ଜାଣିପାରି ନାହାନ୍ତି ।

ସୁରେନ୍ଦ୍ର (ଅଳ୍ପ ହସରେ) ହଉ ହେଲା, ତୋରି କଥା ମାନି
ମୁଁ ଏବେ ଯାଉଚି ରେଷ୍ଟ ନେବି ।
ତୁ କିନ୍ତୁ ଅନୁପମକୁ ଖବର ଦେ ଆସିବାକୁ ।
ମୁଁ ତା ସହିତ ନିଜେ କଥା ହେବାକୁ ଚାହେଁ ।

ରୀମା ହଉ ହେଲା ବାବା ହେଲା ।
ବୁଧିଆ ତୁ ଡାଡିଙ୍କୁ ନେଇଯା ।
(ସୁରେନ୍ଦ୍ର ବୁଧିଆ ସହିତ ଭିତରକୁ
ଯିବାବେଳେ) ଡାଡି, ମୁଁ ଟିକେ ମୋ
ସାଙ୍ଗ ସେଲି ଘରୁ ଆସୁଚି ।
ତାର ଆଜି ବାର୍ଥ ଡେ ତ ।
ଜଷ୍ଟ ଯିବି କଂଗ୍ରାଚୁଲେସନ ଜଣାଇ ଫେରି ଆସିବି । (ବୁଧିଆ ପ୍ରତି)
ବୁଦ୍ଧିଆ, ଡାଡିଙ୍କର ଯେମିତି କିଛି ଅସୁବିଧା ନହୁଏ, ମନେ ରହିଲାତ ?

ବୁଧିଆ ତମେ ଯାଅମ ଦେଈ ।
ଏ ବୁଧିଆ ଏଣିକି ସବୁ ସମ୍ଭାଳି ନବ ।

ସୁରେନ୍ଦ୍ର ହଁ ରେ ମା, ତୁ ଯା ।

ରୀମା ହଉ ମୁଁ ଆସୁଚି ଡ଼ାଡ଼ି, ବଟ୍ ଟେକ୍ କେୟାର ।
(ରୀମା ବାହାରକୁ ଓ ବୁଧିଆ ସହିତ ସୁରେନ୍ଦ୍ର ଘର ଭିତରକୁ ପ୍ରସ୍ଥାନ)

(ଅନ୍ଧାର)



# ଅଷ୍ଟମ ଦୃଶ୍ୟ

(ସୁରେନ୍ଦ୍ରଙ୍କ ଘର .... ଅନୁପମ ଓ ରୀମାର ବ୍ୟବହାରରେ ବ୍ୟସ୍ତ ବିବ୍ରତ ହୋଇ ଉଠିଥାଏ)

ଅନୁପମ : No this is absolutely disgusting.

ରୀମା : ବଟ୍ ହ୍ଵାଏ ?

ଅନୁପମ : ଏକା, ଏକା ଏତେ ଗୁଡ଼ାଏ ବାଟ Long Drive କରି
ତମେ ମୋ କ୍ଲିନିକରେ ପହଞ୍ଚିଲ ।
ତମରି ପଦିଏ କଥାରେ ମୁଁ ସବୁ ପେସେଣ୍ଟକୁ
Neglect କରି ତମ ସହିତ ଆସିବାକୁ ସାମାନ୍ୟତମ କୁଣ୍ଠାବୋଧ ବି କରିନି । ଅଥଚ ବାଟସାରା ତମକୁ ଯାହା କିଛି ପଚାରିଲେ ତମେ କିଛି ଉତ୍ତର ଦେଇନ ? Why ?

ରୀମା : ସବୁ ପ୍ରଶ୍ନର ଉତ୍ତର ସବୁ ଜାଗାରେ ଦିଆ ଯାଏନା ଅନୁପମ !

ଅନୁପମ : କିନ୍ତୁ ମୋର ଧୈର୍ଯ୍ୟ ନାହିଁ

ରୀମା : ଜଣେ ଡକ୍ଟର ଏମିତି ଅଧର୍ଯ୍ୟ ହେଲେ, ରୋଗୀ କୁ ଦେଖିବ କେମିତି ?

ଅନୁପମ ତା ମାନେ ? ଅଙ୍କଲଙ୍କର କ'ଣ କିଛି ହେଇଚି ?

ରୀମା : ହଁ Mild heart attack

ଅନୁପମ : ତମେ ଏ କଥାଟା ମତେ ଏ ପର୍ଯ୍ୟନ୍ତ ଲୁଚେଇଥିଲ ?

ରୀମା : କାଡ଼ିଆକ୍ ସ୍ପେଷାଲିଷ୍ଟଙ୍କୁ ଡକାଇ ଡାଡିଙ୍କର ଚେକଅପ୍ କରେଇଥିଲି ହେଲେ ସେମାନେ କହିଲେ ......

ଅନୁପମ କ'ଣ କହିଲେ ? କାହିଁ ସେ ରିପୋର୍ଟ ଦେଖି !

ରୀମା : ରିପୋର୍ଟ ଦେଖି ଲାଭ କ'ଣ ? ଡଃ ଙ୍କ ମତରେ ଡାଡିଙ୍କର ଏ ରୋଗଟା ପ୍ୟୁରଲି ସାଇକୋଲିଜିକାଲ ।

ଅନୁପମ : ତା ମାନେ ?

ରୀମା : ତମର ମୋର କଥାବାର୍ତ୍ତା ଡାଡି ଜାଣିପାରିଛନ୍ତି

ଅନୁପମ : ଓଃ ..... କଥାଟା ତାହେଲେ ......

ରୀମା ତମେ ତ ଡକ୍ଟର ..... ମୁଁ ବା କ'ଣ ଆଡ଼ଭାଇସ୍ ଦେବି .... ହେଲେ ମୋ ମନ କହୁଛି

ଅନୁପମ କ'ଣ ?

ରୀମା ତମେ ଚାହିଁଲେ ମୋ ଡାଡି ସୁସ୍ଥ ହେଇଯିବେ

ଅନୁପମ : କିନ୍ତୁ ମୁଁ କ'ଣ କରିବି ?

ରୀମା ଯାହା ଅନ୍ୟ ଡାକ୍ତରମାନେ କରିପାରିବେନି ।

ଡାଡି ମୋ ମଥାରେ ସିନ୍ଦୂର ଟୋପାଏ ଦେଖିଲେ ଯୋଉ ଆତ୍ମସନ୍ତୋଷ ପାଇବେ ସେ କଥା ତମେ କେବେ ଭାବିଛ ଅନୁପମ !

ଅନୁପମ I am sorry ରୀମା !

ମୁଁ ତ ମୋର ମତାମତ ତମକୁ ଜଣେଇ ଦେଇଛି - ତା ସତ୍ତ୍ୱେ ....

ରୀମା ଜଣେ ପେସେଣ୍ଟ ପାଇଁ

ତମେ ଡକ୍ଟର ହେଇ, ଏତିକି କରିପାରିବନି ।

ଅନୁପମ ରୀମା ! କ'ଣ କହିବାକୁ ଚାହଁ ତମେ

ରୀମା କିଛିଦିନ ପାଇଁ ମୋ ସ୍ୱାମୀର ଅଭିନୟ କରିବ ।

ଅନୁପମ No - It's impossible.

Excuse me ରୀମା ... ମୁଁ ପାରିବିନି -

ରୀମା ଆଜି ମୋ ଡାଡି ନ ହେଇ

ତମର ବାପା ହେଇଥାଆନ୍ତେ

ତମ ଜାଗାରେ ମୁଁ ଯଦି ହେଇଥାଆନ୍ତି

ମୁଁ କ'ଣ କରିଥାଆନ୍ତି ଜାଣିଛ ।

ଅନୁପମ ଓଃ stop it ରୀମା

ଏ ପରିସ୍ଥିତିରେ ମୁଁ କ'ଣ କରିବି ନ କରିବି

ମୁଁ କିଛି decision ନେଇପାରୁନି ।

ରୀମା ଦେଖ, ସବୁ କିଛି ତମ ଉପରେ ନିର୍ଭର କରୁଛି .... ତମେ ଚାହିଁଲେ ମୋ ଡାଡି ଭଲ ହୋଇଯିବେ ତା ନ ହେଲେ .....

ଅନୁପମ Stop it ରୀମା .... Overall I am a Doctor. ଜଣେ Patient କୁ ଜାଣି ଜାଣି

ରୀମା ତାହେଲେ, ତମେ ମୋ କଥାରେ ରାଜି

ଅନୁପମ ରାଜି କିନ୍ତୁ ......

ରୀମା ମୋ ଡାଡି ଭଲ ହେଇଯିବା ପରେ .....
ମୁଁ ଆଉ ତମ ରାସ୍ତାରେ କୌଣସି ପ୍ରତିବନ୍ଧକ ସୃଷ୍ଟି କରିବି ନାହିଁ ।
ଡାଡି ଭଲ ହେଇଯିବା କ୍ଷଣି ତମେ ଫେରିଯିବ ।

ଅନୁପମ ଏ କଥା ତମ ଡାଡି ଜାଣିଲେ ....

ରୀମା : ସେ ଅବକାଶ ମୁଁ ତାଙ୍କୁ ଦେବିନି
ଏଇଟା ମୋର ପ୍ରତିଶ୍ରୁତି ।
ଏ ଅଭିନୟ କେବଳ ସାମୟିକ ....
ରୀମା ନାମକ ଏକ ଲେଲିହାନ ଶିଖା
ଆଜି ଏକ ବରଫ ଖଣ୍ଡରେ ରୂପାନ୍ତରିତ ହେଇ ଯାଇଛି
ସମୟ ଆଉ ପରିସ୍ଥିତି ତାର ଗତିପଥକୁ ବଦଳେଇ ଦେଇଛି ....

ଅନୁପମ ଆଃ .... ବନ୍ଦକର .... ରୀମା !
ଏ, ଅନୁପମ .... ଆଜି ତମ ପାଖରେ ହାର ମାନୁଛି
Uncle ଙ୍କ ପାଇଁ ମୁଁ ସବୁ କିଛି କରିବାକୁ ପ୍ରସ୍ତୁତ ଅଛି

ରୀମା : ଅନୁପମ .....

(ଅନ୍ଧାର)



# ନବମଦୃଶ୍ୟ

[ସୁରେନ୍ଦ୍ରଙ୍କ ଘର .... ସୁରେନ୍ଦ୍ରଙ୍କ ସ୍ୱାସ୍ଥ୍ୟର ଉନ୍ନତି ହେଇଛି .... ବୁଧିଆ ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରିଚି .... ଆଖିରୁ ଆନନ୍ଦରେ ଲୁହ ଗଡ଼ି ପଡୁଚି]

ବୁଧିଆ ହେ ଭଗବାନ ।
ତୁମର କେତେ କରୁଣା ।
ବାବୁ ଆମର
ଏତେ ଦିନ ପରେ ଆଜି ସକାଳୁ ଟିକେ ବୁଲିବାକୁ ଗଲେ ।
ଧନ୍ୟ କହିବ ଡାକ୍ତର ବାବୁଙ୍କୁ ।

ରୀମା (ଭିତରୁ) ବୁଧିଆ ......

ବୁଧିଆ କଣ ହେଲା ଯେ,
ପୁଣି ସେଇ ପାଟି
ଡ଼ାକ୍ତର ବାବୁ ପରା ଘରେ ଅଛନ୍ତି ।
ଏତେ ବଡ଼ ପାଟି କରୁଚ ।

ରୀମା (ପ୍ରବେଶ) କିରେ, ଡାଡି କୁଆଡ଼େ ଗଲେ ?

ବୁଧିଆ : (ଖୁସିରେ) ବଡ଼ବାବୁ ପରା ବୁଲିବାକୁ ଯାଇଛନ୍ତି ।
ଦେହ ଟିକିଏ ଭଲ ହୋଇଗଲାତ, ପୁଣି ସେଇ ପୁରୁଣା ଖୋଇ ବାହାରିଲା ।

ରୀମା ହଉ, ତୁ ଗଲୁ
ସେ ପଟେ ଅନେକ କାମ ବାକି ପଡ଼ିଚି ।

ବୁଧିଆ ହଉ ହେଲା, ମୁଁ କାମ ଗୁଡ଼ାକ କରି ଦେବିନି ।
ତମେ ଯାଉନ,
ଡାକ୍ତର ବାବୁ ତମକୁ ପରା ଖୋଜୁଥିଲେ ।

ରୀମା : ମତେ ? କାହିଁକି ?

ବୁଧିଆ ସେ କଥା ମୁଁ କେମିତି ଜାଣିବି ଯେ ।

ରୀମା ଡାଡି ସକାଳୁ ମେଡ଼ିସିନ୍ ଖାଇଛନ୍ତି ।
ବୁଧିଆ ସେ କଥା କଣ ତମେ ଜାଣିନା ।
ଯାଇଁଲ ଦେଈ ....
ଡ଼ାକ୍ତରବାବୁ କି କିମିଆଁ କଲେ ଯେ
ବଡ଼ବାବୁଙ୍କର ଔଷଧ ଖାଇବା ଟିକିଏ ଡ଼େରିହେଲେ
ମୋ ଉପରେ ଯୋଉ ତୋଡ଼ ଦେଖଉଛନ୍ତି (ମୁରୁକି ମୁରୁକି ହସି)
ରୀମା : (ହସି) ହଉ, ତୁ ଗଲୁ ଯାଆ ।
ବୁଧିଆ (ଯାଉ ଯାଉ ଫେରି ପଡ଼ି)
ଦେଈ ତମକୁ ପିଲାଟି ଦିନରୁ ବଢ଼େଇ କୁଢ଼େଇ,
ଏଇ ହାତରେ କାଖେଇ କୋଳେଇ ଏତୁଟିଏରୁ ଏତୁଟିଏ କଲି,
ହେଲେ ଗୋଟେ କଥା ପଚାରିବି, ସତ କହିବ ?
ରୀମା କଣ ପଚାରିବୁ ଯେ ?
ବୁଧିଆ ଏଇ ଡାକ୍ତରବାବୁ ସାଙ୍ଗରେ ତମର କଣ ସତରେ ବାହାଘର ହେଇନି ?
ଏଇ ବାହାଘର କଣ ତମର ସେଇ ମିଛି ମିଛିକା କଣ୍ଢେଇ ଖେଳ ?
ରୀମା ବୁଧିଆ,
କଣ ସେମିତି କଉଚୁ !
ବୁଧିଆ ବୁଧିଆ ଯାହା କଉଛି ଠିକ୍ କହୁଚି ।
ବୁଢ଼ା ହେଲେ ବି, ମୋ ମୁଣ୍ଡବାଳ ସବୁ ଖରାରେ ପାଚି ଯାଇନି । ମୁଁ ବି ଦିନେ ଘର ସଂସାର କରିଥିଲି ।
ହେଲେ .... ଭାଗ୍ୟସିନା ....
ରୀମା : ଥାଉ, ଥାଉରେ ବୁଧିଆ ।
ବୁଧିଆ ନାଇଁ ଦେଈ !
ଜାଣି ଶୁଣି ଆଖି ବୁଜି
ମୁଁ ଏ ବଅସରେ ଏ ସବୁ ସହି ପାରିବିନି ।
ତମ ଦିଇଜଣଙ୍କର ସତକୁ ସତ
ବାହାଘର ହବ, ବାଜା ବାଜିବ,

ରୋଷଣୀ ଜଳିବ ଭୋଜି ଭାତ ହବ
କେତେ ଲୋକ ଆସିବେ । ଆଉ ତମେ ପାଦରେ ଅଳତା ପିନ୍ଧି,
ମୁଣ୍ଡରେ ସିନ୍ଦୂର ଲଗେଇ ହାତରେ ଶଙ୍ଖା ପିନ୍ଧି
ନାଲି ଟୁକୁଟୁକୁ ସାଧବ ବୋହୂ ପରି ଏ ଘରୁ ବୋହୂ ସାଜି ବିଦା ହବ,
ସେତେବେଳେ ଏ ବୁଧିଆ ଆଖିରୁ
ଲୁହ ବୋଇବନି ଦେଇ ! ନା - ଖୁସିରେ ବୁଧିଆ ନାଚିବ -
ମନ ଖୋଲି ନାଚିବ ।

ରୀମା — ବୁଧିଆ, ତୁ ଯା, ଯା ପରା କହୁଚି । ଡାଡ଼ିଙ୍କୁ ଜଳଖିଆ ଦେ ...

ବୁଧିଆ — ହଉ ହେଲା, ମୁଁ ଯାଉଛି
ଏଣିକି ତମ ଲୋକ ଆସିଲେ ବୁଝିବ ।
(ବୁଧିଆ ପ୍ରସ୍ଥାନ - ରୀମାର ଆକ୍ରନ - ରିଆକ୍ସନ ସହିତ ହିଡ଼ନ୍ କ୍ରାକ - କୋହ)

ଅନୁପମ — (ପ୍ରବେଶ) କଣ ହେଲା ରୀମା । ତମେ ....

ରୀମା — ନାଇଁ, କିଛି ନାଇଁତ ।

ଅନୁପମ — ଦେଖ ରୀମା । ଏତେଟା ଇମୋସନ
ଅନ୍ତତଃ ତମଭଳି ଝିଅ ପାଖରୁ ଆଶା କରାଯାଏନା
ଦେଖ, ତମ ଡ଼ାଡ଼ି ତ ଭଲ ହେଇଗଲେଣି
ତମ ଡ଼କ୍ଟର ଅଙ୍କଲ ପ୍ରାୟ ସବୁଦିନ ଆସୁଚନ୍ତି,
ମୁଁ ଭାବୁଚି .....

ରୀମା — ମୁଁ ଜାଣେ
ତମେ କ'ଣ କହିବ ।

ଅନୁପମ — ମୁଁ କିଛି କହିବା ଆଗରୁ
ତମର ହୁଏତ ମନେଥିବ; ଏ ନିଷ୍ପତ୍ତି ଅନେକ ଆଗରୁ ହେଇ ସାରିଚି ।

ରୀମା : — ତମେ ଡାକ୍ତର ! ରୋଗୀର ଦେହକଥା ମୋ ଠୁଁ ତୁମେ ବେଶୀ ଜାଣିଛ
ହେଲେ ତମେ ଚାଲିଯିବା ପରେ ଡାଡ଼ିଙ୍କ ଅବସ୍ଥା ଯେ କଣ ହବ ।
ତମେ ଭାବିପାରୁଚ ତ ?

ଅନୁପମ କାହିଁକି
ପୂର୍ବ ସର୍ତ୍ତ ଅନୁଯାୟୀ ମୁଁ ତ ମୋ କର୍ତ୍ତବ୍ୟରେ ଆଦୌ ହେଳା କରିନି ।

ରୀମା ସେଥିପାଇଁ ମୁଁ ତୁମ ପାଖରେ କୃତଜ୍ଞ ଅନୁପମ !
ମୁଁ ବି ମୋ କର୍ତ୍ତବ୍ୟରେ ହେଳା କରିନି ।
ତମ ପାଇଁ ମୋ ମନ, ପ୍ରାଣ, ଦେହ
ସବୁ କିଛି ଉତ୍ସର୍ଗ କରିବାକୁ ପ୍ରସ୍ତୁତ ଅଛି ।
ହେଲେ ତୁମେ ମୋତେ ପ୍ରତି ମୁହୂର୍ତ୍ତରେ ଉପେକ୍ଷା କରି ଚାଲିଚ,
କାହିଁକି ?

ଅନୁପମ ଥରେ କହିଚି ତ ସେ କାହିଁକିର
ଉତ୍ତର ଦବାକୁ ମୁଁ ଅକ୍ଷମ ।

ରୀମା ନା -
ତମକୁ ଆଜି ସବୁକଥା ଖୋ ...ବାକୁ ହବ ।

ଅନୁପମ ବେଶ୍ ।
ଶୁଣ ତେବେ ।
ତମ ପ୍ରତି ମୋର ସ୍ନେହ, ଶ୍ରଦ୍ଧା, ପ୍ରେମ, ସହାନୁଭୂତି
ସବୁ ଅଛି । ତମ ଭଳି ଝିଅକୁ ମୁଁ ସ୍ତ୍ରୀଭାବେ ପାଇଥିଲେ
ମୁଁ ନିଜକୁ ଧନ୍ୟ ମନେ କରିଥାଆନ୍ତି ।
ହେଲେ ଭାଗ୍ୟ ଚକ୍ରରେ ମୁଁ ପେଶି ହେଇ ଯାଇଚି ରୀମା ।

ରୀମା ଅନୁପମ !!

ଅନୁପମ ହଁ ରୀମା !
ମୁଁ ବିବାହ କରି ସାରିଚି ।

ରୀମା : ନା - ମିଛ,
ସବୁ ମିଛ ।

ଅନୁପମ : ହଁ, ରୀମା !
ମେଡ଼ିକାଲ କଲେଜରେ ପଢ଼ିଲାବେଳେ ମୋ ଫ୍ରେଣ୍ଡ ସ୍ନିଗ୍ଧା ସହ
କୋଉ ଏକ ଅଜଣା ମୁହୂର୍ତ୍ତରେ ମୋ ଦୁର୍ବଳତା ବଢ଼ି ଉଠିଥିଲା ।

ଆଉ ସେଇ ଦୁର୍ବଳତା
ମୋ ଜୀବନର ଗତିପଥକୁ ବଦଳେଇ ଦେଲା ।

ରୀମା  ନା -
ସବୁ ମିଛ ।
ତମେ ପୁଣି ମୋ ଆଗରେ ଅଭିନୟ କଲ ?
କୁହ ଏସବୁ ମିଛ ।

ଅନୁପମ  ନା -
ରୀମା !
ମିଛ ନୁହେଁ । ଏଇଟା ନିଛକ ସତ ।
ତମେ ମତେ ଭୁଲ ବୁଝନି ରୀମା !

ରୀମା  ତମକୁ ଭୁଲ୍ ବୁଝିବାର ଅଧିକାର
ତମେ ରୀମାକୁ ଦେଇନାହଁ
ସତକଥାଟା ଜାଣିବାପରେ ଡାଡିଙ୍କର ଅବସ୍ଥା ଯେ ....

ଅନୁପମ  ମୁଁ ଆଉ କ'ଣ କରିପାରିବି କୁହ ?

ରୀମା  ବିନା ସ୍ୱାର୍ଥରେ
ଏଇ ହତ ଭାଗିନୀ ରୀମା ପାଇଁ
ତମେ ବହୁତ କରିଛ ଅନୁପମ !

ଅନୁପମ  ମୋ ମତରେ
ମୋ ଅନୁପସ୍ଥିତିରେ ବି
ତମେ ତମ ଡାଡିଙ୍କ ସାମନାରେ
ତମେ ଠିକ୍ ଏଇଭଳି ଅଭିନୟ କରିବା ଉଚିତ୍ ରୀମା !

ରୀମା  ତମେ କ'ଣ ଭାବୁଛ !
ଆଜି ପର୍ଯ୍ୟନ୍ତ ତମେ କେବଳ ଅଭିନୟ କରି ଆସିଛ
ତମ ସ୍ତ୍ରୀ ଭୂମିକାରେ ମୁଁ କ'ଣ ଅଭିନୟ କରିବାକୁ ଅସମର୍ଥ ହେଇଛି ?

ଅନୁପମ  ତା ହେଲେ !
ତମେ ତମ ଡାଡିଙ୍କ ଆଗରେ ସତ କଥାଟା
କହିବାର ଦରକାର ନାହିଁ

[ସୁରେନ୍ଦ୍ର ସେମାନଙ୍କର କଥାବାର୍ତ୍ତା ଅନ୍ତରାଳରେ ରହି ସବୁ ଶୁଣୁଥିଲେ]
ତମେ ତାଙ୍କୁ କହିଦେବ ଗୋଟାଏ ଜରୁରୀ କାମରେ ମୁଁ ବାହାରକୁ
ଯାଇଚି - ଏମିତି Out of Country......

ରୀମା ଠିକ୍ ଅଛି ।
ତମ କଥା ମାନି
ଆଉ ଗୋଟାଏ ମିଛ କହିବାକୁ ମୁଁ କୁଣ୍ଠିତ ହେବିନି -
ହେଲେ ;
କେତେ ଦିନ ।
କେତେଦିନ ତାଙ୍କ ମନରେ ଗୋଟଏ ଇନ୍ଦ୍ରଜାଲ
ସୃଷ୍ଟିକରି, ତାଙ୍କୁ ବିଭ୍ରାନ୍ତ କରିବି ?

ଅନୁପମ ହେଲେ
ତମେ ମୋ କଥା ଟିକେ ଚିନ୍ତା କର, ରୀମା !
ଦୀର୍ଘ ଦୁଇମାସ ଗୋଟିଏ ମିଛର କୁହେଳି ଭିତରେ
ଘୂରି ଘୂରି ମୁଁ ଯେ
Suffocated ହେଇଗଲିଣି; ରୀମା !
ମୋର ଏଇ ଦୟନୀୟ ଅବସ୍ଥା ପ୍ରତି
ତମର କ'ଣ ସାମାନ୍ୟ ଟିକିଏ ବି
କରୁଣା ନାହିଁ ବନ୍ଧୁ ହିସାବରେ ?

ରୀମା ନା ......
ଆଉ ମୁଁ ତମକୁ ଅଟକାଇବି ନାହିଁ ।
ତମେ ମୋ ପାଇଁ ଅନେକ କରିଛ । ଆଉ ନୁହେଁ ।
ବୁଢା ବାପାଟାକୁ ବଞ୍ଚେଇ ରଖିବା ଲାଗି
ମତେ ଏଥର କେବଳ
ଅଭିନୟ କରିବାକୁ ହେବ । ଅଭିନୟ
ସୀମନ୍ତରେ ସିନ୍ଦୂର ଲଗେଇବାର ସୌଭାଗ୍ୟ ନ ଥାଇ ବି
ମତେ ସୀମନ୍ତିନୀର ଭୂମିକାରେ ଅବତୀର୍ଣ୍ଣ
ହେବାକୁ ହେବ ।

ହା, ହୁତାଶ ଭିତରେ
ଜଳି ଜଳି ଡାଡିଙ୍କର ଜୀବନ ପ୍ରଦୀପକୁ
ମତେ ଜଳେଇ ରଖିବାକୁ ପଡ଼ିବ ।

ଅନୁପମ — I am unfortunate enough
ଭୁଲରେ ହେଉ ବା ଠିକ୍‌ରେ ହେଉ
I am allready married
ତମେ ମତେ କ୍ଷମା କରିଦିଅ - କ୍ଷମା କରିଦିଅ
(ଦ୍ରୁତଗତିରେ ପ୍ରସ୍ଥାନ)
(ଅନୁପମ ଚାଲିବାର ଦେଖି ସୁରେନ୍ଦ୍ର ଚିତ୍କାର କରି ଉଠିଛନ୍ତି)

ସୁରେନ୍ଦ୍ର — (ପ୍ରବେଶ) ଆଃ ... (ଚିତ୍କାର) ଏ ସବୁ ମୁଁ କ'ଣ ଶୁଣିଲିରେ ମା ।
ଏ ସବୁ କଣ ସତ ? (ଅନୁପମକୁ ଡାକି) ଅନୁପମ ! ଅନୁପମ !

ରୀମା — ଡାଡି, ଡାଡି, ବୁଧିଆ, ବୁଧିଆ ।
(ସୁରେନ୍ଦ୍ର ପଡ଼ିଯିବାକୁ ଗଲାବେଳେ ରୀମା
ଧରି ପକେଇଛି - ବୁଧିଆ ଆସିଚି)
ଡ଼ାଡ଼ିଙ୍କର କଣ ହେଇଗଲା ।
ଧଅ - ଧଅ ବୁଧିଆ !

ବୁଧିଆ — ବାବୁ !

ରୀମା : ଡାଡି !
(କାନ୍ଦି ଉଠିଛି ରୀମା । ସୁରେନ୍ଦ୍ରଙ୍କ ମୃତ ଶରୀର ଉପରେ ମୁଣ୍ଡ ପିଟିଚି
- କାନ୍ଦ ବନ୍ଦ ହେଇ ଯାଇଚି - ହସିଛି - ପାଗଳାମି ବଢ଼ିଛି)...

ରୀମା : (Reaction)
ଡାଡି !
ତମେ ଏ ସମୟରେ ଶୋଇଛ କ'ଣ ? ଉଠ
ଅନୁପମ ପରା ଆଇଲେଣି -
ମୋ ଉପରେ ସିନା ରାଗିବ - ତୋଇଁ ଉପରେ କ'ଣ ରାଗନ୍ତି ?
ଉଠ .... ଏଇ ଦେଖ

ତମ ଜ୍ୱାଇଁ ତମ ପାଇଁ ବାଛିବାଛି କେତେ ଜିନିଷ ଆଣିଛନ୍ତି ।
fruits, କଫି, cigar, Soft Drink
ଆଉ ସନ୍ଦେଶ - ଉଠନା .... ଉଠ ଡାଡି ।
ତମେ ନ ଉଠିଲେ, ଇଏ କ'ଣ ଭାବିବେ କହିଲ ?
ଉଠ ....

ବୁଧିଆ   ଦେଇ ....

ରୀମା   ହଁ, ମିଛି ଅଙ୍କ କଷାରେ, ସତ ମିଳିବ କୋଉଠି,
ଜୀବନରେ ଏଇ ଗାଣିତିକ ସୂତ୍ରରେ
ଅଙ୍କଟା ଯଦି ଥରେ ଭୁଲ ହେଇଗଲାନା,
ତେବେ, ପଥ ହୁଡ଼ିଯିବ -
ଅନୁପମ ତାଙ୍କ ବାଟରେ ଚାଲିଗଲେ -
ମୁଁ ତ ତାଙ୍କୁ ଅଟକେଇ ପାରିଲିନି -

ବୁଧିଆ   ଦେଇ - ବୁଢ଼ାବାବୁ ସବୁଦିନ ପାଇଁ ଚାଲିଗଲେ ....

ରୀମା   ହଁ, ଡାଡି ବି ଗଲେ,
ତାଙ୍କୁ ମୁଁ କେମିତି ଅଟକେଇ ଥାଆନ୍ତି ଯେ ? ଜାଣୁ - ବୁଧିଆ ମୁଁ ବି ଯିବି - ତୁ ବି ଯିବୁ -
ସମସ୍ତେ ଯିବେ - (କାନ୍ଦ ଭିତରେ ଗଲେଣି ତୋ ସଙ୍ଗେ । ଯେତକ ଜନ ...Back ground ରୁ ସଂଗୀତ ଆସିବ -) ମନବୋଧ ଚଉତିଶାରୁ

ବୁଧିଆ   (କାନ୍ଦ) ଦେଇ !

ରୀମା   ଆରେ କାନ୍ଦୁଛୁ କାହିଁକି ବୁଧିଆ ..... ହସ ..... ହସ ପରା କହୁଛି - (କାନ୍ଦ ସହ ହସ .....)

(ଅନ୍ଧାର)



# ଦଶମ ଦୃଶ୍ୟ

(ରଞ୍ଜନ ଚିନ୍ତା କରି ବସିଛନ୍ତି - ବୁଧିଆ ଟ୍ରେ ରେ ଚା ଧରି ଆସିଛି)

ବୁଧିଆ ସେଦିନରୁ କାନ୍ଦ ବନ୍ଦ ହେଇନି ଦେଇଙ୍କର ... ନିଇତି ଏ ଘରକୁ ଆସିଲେ ବସି ବସି କାନ୍ଦିବେ,

ବାହୁନି ହେବେ - ଏକା ଏକା ଗପିବେ - ବୁଢା ବାବୁଙ୍କ ଜିନିଷପତ୍ର ସାଙ୍ଗେ ଘଡ଼ିଏ ଲେଖାଏଁ କଥା ହେବେ -

ରଞ୍ଜନ ଆଚ୍ଛା ବୁଧିଆ

ସେଦିନରୁ ଆଉ ଅନୁପମ ଏଠିକି ଆସିନାହାନ୍ତି ?

ବୁଧିଆ ନା ....

ରଞ୍ଜନ ଆଶ୍ଚର୍ଯ୍ୟ !

ତାଙ୍କ ଠିକଣା ତମେ ଜାଣିଛ ?

ବୁଧିଆ ହଁ

ଚା' ଟା ଥଣ୍ଡା ହେଉଯାଉଛି - ପି ଦିଅ -

(ବୁଧିଆ ଭିତରକୁ ଯାଇ ଠିକଣା ରଞ୍ଜନକୁ ଦେଇଛି - ରଞ୍ଜନ ଠିକଣାଟିକୁ ଦେଖି -)

ରଞ୍ଜନ ଠିକ୍ ଅଛି - ମୁଁ ଆସୁଛି - ମୋ ଫେରିବା ଡ଼େରି ହବ - ତମେ ବ୍ୟସ୍ତ ହେବନି । (ପ୍ରସ୍ଥାନ)

(ବୁଧିଆ ରଞ୍ଜନଙ୍କ ବାଟକୁ ଅନେଇଛି -
ରିମାର ବଧୂ ବେଶରେ ପ୍ରବେଶ)

ରୀମା Manager ?

ବୁଧିଆ : ଚାଲିଗଲେ -

ରୀମା : କିନ୍ତୁ .... (ଓଢ଼ଣାଟି ଖସିଯାଇଛି - ଓଢ଼ଣା ସଜେଇବା ଭିତରେ)

ବୁଧିଆ : ଫେରିବେ

ତମେ ବ୍ୟସ୍ତ ହୁଅନି -

(ଅନ୍ଧାର)



# ଶେଷ ଦୃଶ୍ୟ

(ବୁଧିଆ ଝରକାର Screen ଉଠେଇଛି - ଆଲୋକ ପଡ଼ିଛି)

ବୁଧିଆ	ଡାକ୍ତର ବାବୁ - ଏକାଥରକେ ସାତ ଦିନ ....

ରଂଜନ	ଏଁ ....

ତମକୁ ପରା ହଜାରେ ଥର ବୁଧିଆ କହିଲିଣି -

କ'ଣ ତମର ଏତିକି ମନେ ରହୁନି ?

ମୁଁ ଏ ଘରେ ଡାକ୍ତର ନୁହେଁ ....

ମୁଁ ହେଲି ତମ ରିମା Prawn procesing factory ର ମ୍ୟାନେଜର ।

ବୁଧିଆ	ଭୁଲ ହେଇଗଲା ଆଜ୍ଞା !

ରଂଜନ	ତମ ଦେଈ କ'ଣ କରୁଛନ୍ତି ?

ବୁଧିଆ	ଆପଣ ଗଲାଦିନୁ ଏ ରୁମକୁ ଆଉ ଆସୁନାହାନ୍ତି - ସବୁବେଳେ ବସି ଗୁଣୁ ଗୁଣୁ ହଉଛନ୍ତି - ଚିଠି ଲେଖୁଛନ୍ତି - ସୂରୁଯ ଉଇଁବା ବନ୍ଦ ହେଇଯିବ - କିନ୍ତୁ ଦେଈଙ୍କର ଚିଠିଲେଖା ସରୁନି - ଦିନ୍ ଦି ଓଳି ମୁଁ ଡାକବାକ୍ସରେ ଚିଠି ପକେଇ ପକେଇ ଥକି ଗଲିଣି -

ରଂଜନ	ଚିଠି ? କାହା ପାଖକୁ

ବୁଧିଆ	:	ସେଇ ଡାକ୍ତର ପାଖକୁ -

ରଂଜନ	ହଉ, ତମ ଦେଈଙ୍କୁ ଡାକ - ମୁଁ ଭାବୁଚି - ଏଥର ତମକୁ ବୋଧହୁଏ ଚିଠି ପକେଇବାକୁ Post Office ଦୌଡ଼ିବାକୁ ନ ପଡ଼ିପାରେ -

ବୁଧିଆ	ଡାକ୍ତର ବାବୁ ! ସତ କହିଲ - ଅନୁପମ ବାବୁ କ'ଣ ଆସିବେ

ରଂଜନ	ଓଃ - ପୁଣି ....

ବୁଧିଆ	ମେନେଜର ବାବୁ !

ଆଉ ଡାକ୍ତର ବାବୁ କହବିନି - ମୁଁ ଦେଖେ ତେଣେ ଦେଈଙ୍କୁ - (ପ୍ରସ୍ଥାନ)

ରଂଜନ	(ଘଣ୍ଟା ଦେଖୁଛନ୍ତି) ଡ଼େରି ହେବାର ତ କିଛି କାରଣ ନାହିଁ

ରୀମା	:	(ପ୍ରବେଶ-ଚା ଆଣିଛି) ମ୍ୟାନେଜର ବାବୁ ! ଚା ....

ରଂଜନ good morning madam.

ରିମା ଆପଣ ମୋ ଠୁଁ ବୟସରେ

ରଂଜନ : ସେ ଯାହାହେଉ, ଚାକିରି ଟା ତ ଆପଣଙ୍କ ପାଖରେ - Subordinate ତ ?

ରୀମା ହଁ, ଆପଣ ବହୁତ ପରିଶ୍ରମ କରୁଛନ୍ତି - ବୁଧିଆ ଠୁଁ ଶୁଣିଛି - ଆପଣ ନ ଥିଲେ ଆମ ଇଣ୍ଡଷ୍ଟ୍ରି .....

ରଂଜନ ସେଇଥି ପାଇଁ କହିବି କହିବି ବୋଲି ଆଜି କହୁଛି - forget the past. ଜୀବନରେ ଯାହା ହରେଇଛନ୍ତି ତାକୁ ଖୋଜି ବସିଲେ ଏ ଜୀବନସାରା ଚାଲିଯିବ ରିମାଦେବୀ ! କିନ୍ତୁ ରେଜଲ୍ଟ କିଛି ମିଳିବନି ବରଂ ବଢ଼ିଯିବ ଦୁଃଖ, frustration, Depression

ରୀମା ମୁଁ ତ ଠିକ୍ ଅଛି - ମ୍ୟାନେଜର ବାବୁ I am allright.

ରଂଜନ ତାହେଲେ କାଲି ଠୁଁ factory ଚାଲନ୍ତୁ AC room, P.A. ଫୋନ ପିଅନ ସବୁ ତ ଅଛି -

ରୀମା କିନ୍ତୁ ମୁଁ .....

ରଂଜନ ମିଛଟାକୁ ଇନ୍ଦ୍ରଧନୁର ସପ୍ତ ରଙ୍ଗ ବୋଲି ଠିକ୍ ବୋଲି ସଜେଇଲେ ବି ସେ କେବେ ସତ ହୋଇ ମୁଣ୍ଡ ଟେକିବନି - - You are not normal you are abnormal

ରୀମା ନା .... ମୁଁ ....
ବିଶ୍ୱାସ କରନ୍ତୁ ମ୍ୟାନେଜର ବାବୁ
ମୁଁ ନରମାଲ୍ । ବୁଧିଆକୁ ପଚାରନ୍ତୁ
ମୋ ଆକଟିଭିଟିଜ୍‌ରେ କିଛି ଲାପ୍‌ସେସନ୍ ନାହିଁ ।
ପଚାରନ୍ତୁ, ବୁଧିଆକୁ -

(ହଠାତ୍ ବାହାରୁ "ଟେଲିଗ୍ରାମ, ଟେଲିଗ୍ରାମ" ଡାକ - ରିମା ଯିବାକୁ ଉଦ୍ୟତ ବେଳେ - ରଂଜନ ଆଗେଇଯିବ)

ରଂଜନ Excuse me, ଆପଣ ରୁହନ୍ତୁ - ମୁଁ ଯେ ମ୍ୟାନେଜର, ଏ କାମ ମୋର - (ବାହାରକୁ ଯାଇଛି)

ରୀମା : ସତରେ ବଡ଼ ଇଣ୍ଟଲିଜେଣ୍ଟ୍ ମ୍ୟାନେଜର -

ରଂଜନ ଡକ୍ଟର ଅନୁପମ .... ?

(Background ରୁ voice - Dr Anupam died in Car Accident)

ରୀମା : ଅନୁପମ .....

(ଦିହାତ ମୁଣ୍ଡ ଉପରକୁ ନେଇ ଯାଇଛି ଯେମିତି ସିନ୍ଦୂର ଲିଭି ଯାଇଛି - ହାତ ଫେରେଇ ଆଣି ଛନ୍ଦି ଦେଇଛି - ପଡ଼ିଛି - ସୋଫାରେ ମୁଣ୍ଡ ବାଜି ଯାଇଛି ରଂଜନ ଧରି ନେଇଛନ୍ତି)

ରଂଜନ : ରିମା ଦେବୀ ! (ହଲେଇ ଦେଇଛି)

ରୀମା : ଏଁ .... (ଧୀରେ ରିମା Sense ଫେରିପାଇଛି)

ରଂଜନ ମିଛଟାକୁ ଯେତେ ଆପଣେଇ

ସତ ବୋଲି ସାବ୍ୟସ୍ତ କଲେ ବି - ଏଇ ମିଛ ପାଇଁ You have lost your Dady - ଏଇ ମିଛ ପାଇଁ you have lost your closest & dearest friend ଅନୁପମ - ଆଉ ଏଇ ମିଛ ପାଇଁ ତମର Estate ଯିବ, ତମର factory ଯିବ ?

ରୀମା : ମ୍ୟାନେଜର -

ରଂଜନ : ମୁଁ ମ୍ୟାନେଜର ନୁହେଁ, ମୁଁ ଡଃ ରଂଜନ, ସାଇକାଟିଷ୍ଟ

ଏଇଟା ନିଛକ ସତ୍ୟ - ସେଇଥିପାଇଁ ମୁଁ ଆଜି ଏଇ ମିଛ ସିନ୍ଦୂରକୁ ଲିଭେଇ ଦେଇ ତମରି ରକ୍ତର ସିନ୍ଦୂର ପିନ୍ଧେଇ ଦେଇ ସୀମନ୍ତିନୀ କରିଦେଉଛି -

ରୀମା : ଡକ୍ଟର ରଂଜନ -

ରଂଜନ : You are now perfect. you are not abnormal.

ରୀମା : ଡକ୍ଟର

ରଂଜନ : ଆରେ ବୁଧିଆ - ତମେ ମିଠା ଆଣ -

ତମ ଦେଇ ସମ୍ପୂର୍ଣ୍ଣ ସୁସ୍ଥ -

(ବୁଧିଆ ଦୌଡ଼ି ଆସିଛି - ଖୁସି ....)

(ଯବନିକା)



## ଚରିତ୍ର

ଚକରା

ଅବିନାଶ

ଅଳକା

ରାନୁ

ପରିତୋଷ

## ପ୍ରଥମ ଦୃଶ୍ୟ

(ଅବିନାଶଙ୍କର ସରକାରୀ ବାସଭବନ - ଡ୍ରଇଂ ରୁମ୍ - ଚାକର ଚକରା ଜିନିଷ ପତ୍ର ସଜଉଛି - ବାହାରୁ କଲିଂ ବେଲ୍ ବାଜିଛି ଇତସ୍ତତଃ ହୋଇ ପଡ଼ିଛି ଚକରା)

ଚକରା (ବଡ଼ ପାଟିରେ) କିଏ ? କିଏ ଡାକୁଛ ?
ବାବୁ କେତେବେଳୁ ଅଫିସ ଗଲେଣି-
ପରେ ଆସ (ପୁଣି ସଜାଡ଼ିବାରେ ବ୍ୟସ୍ତ-ଲାଗ ଲାଗ କଲିଂବେଲ ବାଜିଛି - ଚକରା ବିରକ୍ତ ହୋଇଯାଇଛି)
କହିଲି ପରା ପରେ ଆସ ।
କ'ଣ ଶୁଭୁନି - (କଲିଂବେଲ ପୁଣି)
ଓଃ ଦେଇଙ୍କି ଡାକୁଛ
ଦେଇ ପଢୁଛନ୍ତି । ଏବେ କାହାରି ସହ ଦେଖା ହେବନାହିଁ-
ପରେ ଆସ (କଲିଂବେଲ)
ସକାଳୁ ଦି'ଘଣ୍ଟା ଗପି ଗପି ଗଲ ।
ମନ ଶାନ୍ତି ହେଲାନି - ଏ ରାନୁ ଅପାକୁ
ପାରି ହବନି ।
(ବାହାର ଘରକୁ ଯାଇ କବାଟ ଖୋଲିଛି, ଫେରିଛି ଅବିନାଶ ସହ)

ଅବିନାଶ କ'ଣ କରୁଥିଲୁ ?
ଲାଗେ ଲାଗେ କଲିଂବେଲ ବାଜୁଛି - ତୁ ଶୁଣୁନୁ ।

ଚକରା ନାଇଁ ... ମୁଁ ... ଆପଣ ... ଅଫିସ୍ (ଡରିଯାଇଛି)

ଅବିନାଶ ଦେଇ କାହାନ୍ତି ?
ମୁଁ ଟୁର୍‌ରେ ଯିବି - ଆଟାଚି ସଜାଡ଼ି ଦେବେ ।

ଅଳକା (ପ୍ରବେଶ) ଆରେ ତମେ ପରା ଅଫିସ ଯାଇଥିଲ । ଏତେ ଶିଘ୍ର ଫେରି ଆସିଲ । ଛୁଟି ହୋଇଗଲା କି ଅଫିସ ?

ଅବିନାଶ : ନା ...

ଟୁର୍ ପଡ଼ିଗଲା । ଗୋଟେ ଜରୁରୀ କାମରେ ବାଲେଶ୍ୱର ଯିବାକୁ ହବ । ବାହାରେ ଜିପ୍ ଅପେକ୍ଷା କରିଛି । ତମେ ଡେରି କରନା ମୋ ନେବା ଜିନିଷ ସଜାଡ଼ି ଦିଅ ।

ଅଳକା ମାନେ ?

ଅବିନାଶ ସେଠି ନାଇଟ୍ ହଲଟ୍ ।

(ଚକରାକୁ) ଆଣିଲୁ ମୋ ଆଟାଚି (ଚକରା ଚାଲିଯାଇଛି)

ଅଳକା ତା' ହେଲେ କାଲିର ପିକ୍‌ନିକ୍ କ୍ୟାନସେଲ୍ ।

ଅବିନାଶ ମୁଁ କ'ଣ କରିବି ?

ଅଳକା ଆଜି ସକାଳେ ରାନୁ ଅପା ଆସିଥିଲା ।

ତାଙ୍କୁ ମନା କରିଦେଇଥିଲେ ଯୋଗାଡ଼ ଯନ୍ତ୍ର ବନ୍ଦ ହେଇଥାଆନ୍ତା

ଅବିନାଶ ଅଫିସରେ ପହଞ୍ଚିବା କ୍ଷଣି ଏସ୍.ପି.ଙ୍କ ଅର୍ଡ଼ର

ବରଂ ତମେ ଅଳକା ! ସେମାନଙ୍କ ସହ ଚାଲିଯାଅ ।

ମୁଁ ଟୁର୍ ନ ଗଲେ ଚଳିବନି ।

ଅଳକା ମୁଁ ଏକା । ଅସମ୍ଭବ ।

ଅବିନାଶ ତା' ହେଲେ ସେକେଣ୍ଡ ସଟର ଡେ ପାଇଁ ରଖିଦିଅ ।

ଅଳକା (ଅଭିମାନରେ)

ଦେହ ଖରାପ ବାହାନାରେ ଛୁଟି ଗୋଟେ ଦିନ ନେଇ ଯାଇଥିଲେ ହେଇ ନ ଥାଆନ୍ତା ।

ଅବିନାଶ ଆରେ ବଡ଼ ହାକିମଙ୍କ ସ୍ପେଶାଲ ହୁକୁମ୍ ।

ତାଙ୍କର ଏକା ଜିଦ୍ ଇନ୍‌ଭେଷ୍ଟିଗେସନ୍ ମୁଁ କରେ ।

ଆଉ ମୁଁ ନଗଲେ କେମିତି ହବ, କହିଲ ?

ଚାକିରି ଯେତେବେଳେ କରିଛି, ମତେ ଭୁଲ ବୁଝନା ।

ମୋ ପାଇଁ ଅସୁବିଧା ହେଲା ବୋଲି ରାନୁ ଅପାଙ୍କୁ କହି ମୋ ଲାଗି କ୍ଷମା ମାଗିନବ ।

ରାନୁଙ୍କୁ ପଟାପଟି କରି ପୁଣି ଗୋଟେ ଡେ଼ଟ୍

ତମ ସାର୍‌ଙ୍କୁ କହି କରିଦେବ ପ୍ଲିଜ୍ ।

ଅଳକା ତମେ ନିଜେ ରାନୁ ଅପାଙ୍କୁ ଫୋନରେ କହିଦିଅ । ଭଲ ହେବ ।

(ଜିପ୍ ହର୍ଣ୍ଣ ବାହାରୁ)

ଅବିନାଶ ଏ ସବୁ ଫୋନରେ ନୁହେଁ ।

ମୋର ଡରି ହଉଛି । (ଚକରା ଭିତରୁ ଆଟାଚି ସହ ଆସିଛି ଅବିନାଶ ଆଟାଚି ଖୋଲି ଦେଖିଛି)

ଅଳକା ଫେରିବ କେବେ ?

ଅବିନାଶ ଦି' ତିନିଦିନ ଲାଗିପାରେ ?

(ଚକରାକୁ) ମୋ ବ୍ରସ, ଟାଉଏଲ ସବୁ ଦେଇଛୁତ ?

ଚକରା ହଁ ।

ଅଳକା କ'ଣ ହଁ ? ବାବୁଙ୍କ ନୂଆ ସୁଟ୍ ଟା ଦେଇଛୁ ?

ଚକରା ନା

ଅଳକା ତୁ ଯା ବାବୁଙ୍କ ପାଇଁ ଚା' କପେ କରିଦେ ।

ମୁଁ ଦେଖୁଛି (ଚକରା ଭିତରକୁ ଯାଇଛି)

(ଅଳକା ଆଟାଚି ନେଇ ଦେଖିଛି-)

ପରଫ୍ୟୁମ୍ ପାଉଡ଼ର, ଅତର କିଛି ରଖିନି, କହୁଚି ସବୁ ଦେଇଛି ।

ସାବୁନ କେସ୍ ଟା ପୁଣି ନବ ନା ନାହିଁ ?

ଅବିନାଶ ହଁ, ଆରେ ସବୁ ଚଳିବ ଅଳି !

ଅଳକା ନାଇଁ, ନାଇଁ କିଛି ଚଳିବନି । ତମେ ଯେ

ଅବିନାଶ ଢମା ଦି' ତିନି ଦିନ, ଚଳିଯିବିନି

ଅଳକା : ଆଗରୁ ଟୁର୍ ଯିବା ଆଉ ଟୁର୍ ଭିତରେ

ଅବିନାଶ (ହସ) କାରଣ ତମେ ମୋ ପାଖେ ପାଖେ, ଏଇଆତ ?

ମୁଁ ଏଠି ଏକା ଏକା ।

ଅବିନାଶ : ଏଇ ଦେଖ,

ତମ ପାଇଁ ଏକାଥରକେ ଲାଇବ୍ରେରୀରୁ ସାତଟା ବହି ଆଣିଛି - ବାଛି ବାଛି

ଅଳକା ପଢ଼ିବି ଯେ ହେଲେ ଆମ ବାହାଘର ତିନିମାସ ପୂରିନି ।

ତମେ ପୁଣି ତିନିଦିନ ବାହାରେ ରହିବ ।
ଜାଣ ! ସତେ ଗୋଟାଏ ଦିନ ଗୋଟାଏ ଯୁଗପରି ଲାଗିବ ।

ଅବିନାଶ ତମ ବଂଧୁ ରାନୁ ଅପା, ତାଙ୍କ ପତିଦେବ ତମ ସାର୍
ପ୍ରକାଶ ବାବୁ, ଆଉ ଚକରା ।
ସମସ୍ତେ ଅଛନ୍ତି । ଭୟ କରିବାର କିଛି ନାହିଁ ।
ତା' ଛଡ଼ା ଫୋନ ତ ଅଛି ।
ମୁଁ ଚାହିଲେ କଥା ହେବି । ତମେ ଆଦୌ ବ୍ୟସ୍ତ ହୁଅନା ।
ଜଣେ ପୋଲିସ୍ ଅଫିସରର ସ୍ତ୍ରୀ ଭାବରେ ବି କରେଜିଅସ୍ ।
ଦେଖିବ, ତମର ଧୀରେ ଧୀରେ ଅଭ୍ୟାସରେ ପଡ଼ିଯିବ ।
ଅଳି ତମେ ମନ ଖରାପ କରନି ।
ତମେ ଟିକିଏ ହସିଲ, ହସ
ବାଲେଶ୍ୱରରେ ଭଲ ଇଲିଶ୍ ମିଳେ । ତମ ପାଇଁ ଆଣିବି ।

ଅଳକା ଇଲିଶ୍ !

ଅବିନାଶ ହଁ ।

ଅଳକା ଚାକିରି କରିବ ପୁଲିସ୍ ମାଛ ଖାଇବ ଇଲିଶ୍

ଅବିନାଶ ପୁଲିସ୍ ଆଉ ଇଲିଶ୍ (ଉଭୟେ ହସିବେ)
ମୋର ଡ଼େରି ହଉଛି ପ୍ଲିଜ୍ ଟେକ୍ କେୟାର ।
ରାନୁ ଅପାଙ୍କୁ ମନେ କରି କହିଦେବ ।
ମୁଁ ଚାଲିଲି ....... (ପ୍ରସ୍ଥାନ)

ଚକରା (ପ୍ରବେଶ ହାତରେ ଚା କପ୍) ବାବୁ ଚାଲିଗଲେ କି ଦେଈ !
ଅଟକେଇଲ ନାହିଁ ।

ଅଳକା : ତୁ ଅଟକେଇଲୁନି, ଡେରି ତ କରିଦେଲୁ
ହଉ ଏ ବହିଗୁଡ଼ା ନେଇ ମୋ ଶୋଇବାଘର ଟେବୁଲ୍‌ରେ ଥୋଇଦେ ।
ଆଉ ମୋତେ ଦେ ସେ ଚା'ଟା
ମୁଣ୍ଡଟା ମୋର ବଥଉଛି ।

ଚକରା : ଅନବରତ ଏଡ଼େ ଏଡ଼େ ମୋଟା ବହିସବୁ ପଢୁଛ

ଏଥିରେ ତମ ମୁଣ୍ଡ ବଥେଇବନି ।
ବାବୁ ତ କିଛି ବୁଝିବେ ନାହିଁ ।
ତମ ପାଇଁ ମୋଟା ମୋଟା ବହିସବୁ ଆଣିବେ
ଆଉ ତମେ ପଢ଼ି ପଢ଼ି ସୁନା ଖଡ଼ିକା ପରି ଦେହଟାକୁ
କଳାକାଠ କରିଦେଲଣି, ବାବୁ ଦରମା ପାଇବେ ଯେ
ଆଗ ତମ ଲାଗି ବହି କିଣା ହବ ।
ଏଥର ବୋହୂ ହେଲଣି ଦେଇ !
ପଢ଼ିପଢ଼ା ଟିକେ କମେଇ ଦିଅ - ବହିଛାଡ଼, ସଂସାର ଦେଖ ।

ଅଳକା — ତୁ ମୂର୍ଖ କୋଉଠୁ ବୁଝିବୁ ?
ମୁଁ ପରା ରିସର୍ଚ୍ଚ କରୁଛି ।

ଚକରା — ତମ ସଙ୍ଗେ ଗାଁରୁ ଅଇଲା ଦିନରୁ ଶୁଣୁଛି
ତମେ ଏଇଟା କରୁଛ, କେବେ ସରିବ କହିଲ ।

ଅଳକା — ସରିବ । ସରିବ ।
ତୋର ମୁଣ୍ଡ ଖେଳେଇବା ଦରକାର ନାହିଁ ।
ଗଲୁ ବହିଗୁଡ଼ା ନେଇ ଆଗ ରଖିଆ (ଚକରା ଯିବାବେଳେ)
ଚକରା ... ଶୁଣ୍ ... ଶୁଣ୍ (ଚକରା ଫେରିଆସିଛି)
କାଲି ଗାଁରୁ ପରା ଚିଠି ଆସିଥିଲା ତୋର...

ଚକରା — ହଁ...
ବୁଢ଼ୀ ମା'ର ଦେହ ଖରାପ ଥିଲା
ଖୋଜୁଛି ମତେ ଦେଖିବ ବୋଲି
ପାଚିଲା ତାଳ କେତେବେଳେ ଖସିଯିବ କିଏ କହିବ ।
ମୁଁ ତ ଗାଁକୁ ଯିବା କଥା ବାବୁଙ୍କୁ କାଲି କହୁଥିଲି
ଗାଁ କଥା ଶୁଣି ବାବୁ ତ ମୋ ଉପରେ
ରାଗୁଛନ୍ତି ।

ଅଳକା — ଠିକ୍ ଅଛି । ତୁ ଗାଁ'କୁ ଯିବୁ ତ ।

ଚକରା — ହଁ...
ଯିବାକୁ ମନ କହୁଚି ଯେ...

ଅଳକା ବାବୁ ଆସିବା ପୂର୍ବରୁ ମାନେ କାଲି ସନ୍ଧ୍ୟା ପୂର୍ବରୁ
ଯେମିତି ହେଉ ଫେରିଆସି ପାରିବୁ ଯଦି ତୁ ଯା
ମୋର କିଛି ଅସୁବିଧା ହବନି...

ଚକରା ହଁ ଦେଈ ! ମୁଁ ଫେରିଆସିବି...

ଅଳକା ଏଇ ନେ ରଖ ଦି'ଶ ଟଙ୍କା । ରଖ
ଆମ ଘର ଆଡ଼େ ଆସିଲା ବେଳେ ଚାଲିଆସିବୁ
ମୋ ଚିଠି ଖଣ୍ଡେ ବୋଉକୁ ଦେଇଦବୁ ଆଉ
ଆସିଲା ବେଳେ ତା' ପାଖରୁ ଚିଠି ଆଣିବୁ... ହେଲା

ଚକରା ଆଉ କ'ଣ କହିବି ଦେଈ !

ଅଳକା କହିବୁ...(ହସ) ବହୁତ - ବହୁତ

ଚକରା : ସତରେ ଦେଈ !
ତମେ ଭାରି ଭଲ ।
ଆଉ ଟିକିଏ କଫି କରି ଆଣେ

ଅଳକା ନା, ଥାଉ । ଏବେ ତ ଚା ପିଇଲି
ତୁ ଯା'ମୋ ପାଇଁ ରାତିକି, ଫ୍ରିଜ୍‌ରେ ରାନ୍ଧିକି ରଖି ଦେ...

(ଅନ୍ଧାର)



## ଦ୍ୱିତୀୟ ଦୃଶ୍ୟ

(ଅଳକା ସୋଫା ଉପରେ ବସି ହାଇ ମାରୁଛି - ମନରେ ଅନେକ ଭାବନା । ଉଦାସ ସ୍ୱଭାବ - ଅବିନାଶଙ୍କ ଅନୁପସ୍ଥିତି ଅଳକାକୁ ଅସ୍ଥିର କରିଛି - ଅଶାନ୍ତି ବାରି ହୋଇଯାଉଥିବ ତାଙ୍କ ମୁଖମଣ୍ଡଳରେ)

ଅଳକା : (ସ୍ୱଗତ) ନା...
ମୁଁ ତମ ସହ କଥା ହେବିନି ଅବିନାଶ !
ତମେ ଏମିତି ଅଚାନକ ଟୁର୍‌ରେ ଚାଲିଗଲ ।
ଜାଣିଛ ! ମୋ ମନର ଅବସ୍ଥା ।
ତମରି ଫଟୋ ପାଖରେ ମୋର ଆଜି ଅଧିକାଂଶ ସମୟ କଟିଛି ।
କିଛି ପଢ଼ିନି, କି କିଛି ଲେଖିନି ।
ମୋ ରିସର୍ଚ୍ଚ କାମ ବି କରିନି ।
ତିନିମାସ ବିବାହିତ ଜୀବନରେ ପ୍ରଥମ ପିକ୍‌ନିକ୍ ସ୍ପଟ୍
ରାନୁ ଠିକ୍ କରିଥିଲା ।
ଆମ ବାହାଘରରେ ସେ ଆମକୁ କେତେ ସାହାଯ୍ୟ କରିଛି ।
ସେ ମତେ କେତେ ଭଲପାଏ ।
ଆମ ବିବାହ ତା'ରି ପାଇଁ ହେଇଛି ।
ସେ ଯଦି ବାପା ବୋଉଙ୍କୁ ବୁଝେଇ ନ ଥାଆନ୍ତା
କ'ଣ ହେଇଥାଆନ୍ତା, କହିଲ ?
ମୁଁ ତମ ସଙ୍ଗେ କଥା ହେବିନି । ନା...

ରାନୁ (ପ୍ରବେଶ) ଆରେ ଅଳି !
ଏକା ଏକା ବସି କାହା ସଙ୍ଗେ ଏତେ ଗପୁଛୁ ।
ତୋ ବାବୁ !
ଅଫିସ୍‌ରୁ ଆସି ନାହାନ୍ତି ?

ଅଳକା : ନା,
ସେ ଟୁର୍ ଯାଇଛନ୍ତି । ବାଲେଶ୍ୱର ।

ରାନୁ ଆଜି ଫେରିବେ ତ ?

ଅଳକା ନା...

ରାନୁ ତୋ ମୁଣ୍ଡ ଠିକ୍ ଅଛି ନା ନାହିଁ ?

ଅଳକା ପୂରାପୂରି ଠିକ୍ ଅଛି ।
ଗଲାବେଳେ କହି ଯାଇଛନ୍ତି ତତେ ବୁଝେଇ କହି
ଆଉ ଦିନକୁ ଫିକ୍ସ କରିବାକୁ ।

ରାନୁ ତମ୍ବୁ, ଗାଡ଼ି, ହଣ୍ଡାହାଣ୍ଡି, ଟେପ୍ ସବୁ ବରାଦ ପରେ
ଖାଲି ମାର୍କେଟିଙ୍ଗ କାମ ବାକୀ ଅଛି ।

ଅଳକା ତା' ହେଲେ ତମେ ସବୁ ଯାଅ ।
ପରେ ଆମେ ମିଶି ଅନ୍ୟ କୋଉଠିକି ଯିବା...

ରାନୁ କି' କଥା କହୁଛୁ ତୁ !
ଭୋଜି ତୋ ଲାଗି, ପୁଣି ତୁ ଯିବୁନି ।
ଆଲୋ ! ତୁ ମୋ ସଙ୍ଗେ ଅଡ଼ା ହଉଚୁ ।
ଚାଲ ! ବାହାରେ ମାରକେଟ୍ ଯିବା ।
ଦୌଡ଼ି ଦୌଡ଼ କରି ଆଗର ଇଏ ବେଦମ୍ ହେଇଗଲେଣି ।

ଅଳକା ରାଣ ଅଛିଲୋ ! ବଡ଼ ଦରକାରୀ କାମରେ ହଠାତ୍
ଯା'ଙ୍କୁ ଯିବାକୁ ହେଲା, ଆଉ ଦିନକୁ ଡେଟ୍
ଫିକ୍ସ କରିବା, ତୁ ସାର୍‌ଙ୍କୁ ମୋ ଲାଗି ବୁଝେଇଦବୁ ପ୍ଲିଜ୍ ।

ରାନୁ ହଉ ହେଲା । ଅସୁବିଧା ହେଇଛି ମାନେ କ୍ୟାନ୍‌ସେଲ ହବ ।

ଅଳକା ପ୍ଲିଜ୍ ସାର୍‌ଙ୍କୁ ବୁଝେଇ କହିବୁ ।

ରାନୁ ଧେତ୍, ପୁଣି ସେଇ ସାର୍ !

ଅଳକା ଛାଡ୍ ।
ପ୍ରକାଶ ଭାଇଙ୍କୁ ମୋ ପାଇଁ ବୁଝେଇଦବୁ ।
ମୁଁ ସାର୍ କହିଦେଲି ତୁ ରାଗୁଛୁ ?
ତିନିବର୍ଷ କାଳ ସେ ଆମକୁ ପଢ଼େଇଛନ୍ତି ପରା
ବେଳେ ବେଳେ ସାର୍ ଡାକ ଆପେ ମନକୁ ଚାଲିଆସୁଚି -
ତୁ କାହିଁକି ଆମ ସାର୍‌ଙ୍କୁ ବାହା ହେଲୁ ଯେ

ରାନୁ — ଅନର୍ସ କ୍ଲାସରେ ନିଶାନ୍ତ କବିତାର ତର୍ଜମା ଶୁଣି ଶୁଣି
ପ୍ରକାଶଙ୍କୁ ଭଲ ପାଇ ବସିଲି,
କେଜାଣି କାହିଁକି ସେତେବେଳେ ମନଟା ବଡ଼ ଜିଦ୍‌ଖୋର୍ ହେଇଗଲା
ଲାଜ ସରମ ତେଜି ତାଙ୍କୁ ହିଁ ବାହାହେବି ନ ହେଲେ ଅନ୍ୟ
କାହାକୁ ବାହା ହେବିନି କେମିତି ଘରେ ମୁହଁ ଖୋଲି
କହିଦେଲି ଆଜି ବି ଭାବିଲେ ବଡ଼ ଆଶ୍ଚର୍ଯ୍ୟ ଲାଗେ ।
ନିଜକୁ ବିଶ୍ୱାସ ମଧ୍ୟ କରିପାରେନା ।
ସତରେ ଅଳି !
ମୁଁ ତାଙ୍କୁ ପାଇ ଭାରି ଖୁସିଲୋ ।

ଅଳକା — ରାନୁ ! ନିଶାନ୍ତ ବହିର ସବୁ କବିତାଗୁଡ଼ିକ ଭାରି ନିଛକ ନୁହେଁ !

ରାନୁ — ହଁ କବି ପରିତୋଷ ରାଏଙ୍କର ସେହି ବହିଟି ଖୁବ୍
ଭଲ ବହିଟିଏ । କିଣିବା ଭଳି ବହିଟି ।

ଅଳକା — ଆଚ୍ଛା ! ତୁ ସତ କହିଲୁ
କବିତାର ତର୍ଜମା ଶୁଣି ଅଧ୍ୟାପକଙ୍କୁ ବାହା ହେଇପଡ଼ିଲୁ
ଯଦି ପ୍ରକୃତରେ କବିତାର ସ୍ରଷ୍ଟାଙ୍କ ସହ
ତୋ'ର ପରିଚୟ ହେଇଥାଆନ୍ତା
ବୋଧହୁଏ... ତୁ ସାର୍‌ଙ୍କୁ ଛାଡ଼ି ତାଙ୍କୁ ହିଁ ଆଗେ...

ରାନୁ — ମତେ ଚିଡ଼ାନା...

ଅଳକା — ଚିଡ଼ଉନି,
ଖାଲି ପ୍ରକାଶ ଭାଇଙ୍କ ଭଲ ପାଇବାକୁ ମାପୁଛି ।

ରାନୁ — ସ୍କେଲରେ ନା ଫିତାରେ ?
ଆମ ବାହାଘର ତିନିବର୍ଷ ପୂରିଗଲାଣି
ତୋ'ର ତ ତିନି ମାସ ହେଇନି
ଏବେ ଭଲପାଇବାର ଗଭୀରତାକୁ ମାପିବୁ ଯେ,
ତତେ ସମୟ ଅଖଟ ହେବ ।
ମାର୍କେଟିଙ୍ଗ ଲାଗି ତୋ ଭାଇ ବ୍ୟସ୍ତ ହଉଥିବେ ।
କ୍ୟାନସେଲ ଖବର ଶୁଣିଲେ ପୁଣି ସମସ୍ତଙ୍କୁ କହିବେ ।

ଅଳକା ସତରେ ରାନୁ !
ମୁଁ ଏଥିପାଇଁ ବଡ଼ ଦୁଃଖିତ
ମୋ ଲାଗି ପ୍ରକାଶ ଭାଇ ଏତେ କଷ୍ଟ କରିବେ ।

ରାନୁ ହଁ
ମାଣ୍ଡିଆ ଜାଉ ଖୋଉଛି ଯିଏ...

ଅଳକା ତୁ ତ ଏତେ ରାଗୁଛୁ । ପ୍ରକାଶଭାଇ ଏ ପିକ୍‌ନିକ୍ କ୍ୟାନସେଲ କଥା ଶୁଣିଲେ ଆମ ଦୁହିଁଙ୍କ ଉପରେ ରାଗିବେ । ଇଏ ଟୁର୍‌ରୁ ଫେରନ୍ତୁ । ଭୋଜି ଖର୍ଚ୍ଚା ଆଗରୁ ଅଧେ ଦେଇଛନ୍ତି । ଏଥର ଆଉ କିଛି ପେନାଲଟି ପୁଣି ଦେବେ । ଆମେ ଦୁହେଁ ଯାଇ କ୍ଷମା ପ୍ରାର୍ଥନା ମଧ୍ୟ କରିଆସିବୁ...

ରାନୁ ଚକରା ଏଠି ରାତିରେ ଖାଇନେଉ
ତୋ ଡିନର୍ ଟା ଆଜି ଆମ ଆଡ଼େ ହେଇଯାଉ

ଅଳକା ଚକରା ଗାଁ କୁ ଯାଇଛି ।
ଫ୍ରିଜ୍‌ରେ ମୋ ପାଇଁ ରାନ୍ଧି ରଖିଦେଇଛି
ଆଜି ତୋ ଆଡ଼େ ନୁହେଁ
କାଲି ଲଞ୍ଚ୍ ତୋ ପାଖରେ ।
ଶୁଖୁଆ ଭଜା, କଲରା ଆଳୁ ଭଜା, ନଡ଼ିଆ ଚଟଣି
କରିଥିବୁ ଯେ ସାଥୀହୋଇ ସଜ ପଖାଳ ଖାଇବା ।

ରାନୁ : କ'ଣ କିଛି ନୂଆ ଖବର କିଲୋ ?
ଏତେ ଚଞ୍ଚଳ

ଅଳକା ଯାଃ...
ତୋର ତ ତିନି ବରଷ ଖବର ନିଲ୍
ମୋର ତିନି ମାସରେ

ରାନୁ ହଉ ହେଲା ମୋର ଭୁଲ ହେଇଗଲା
ସବୁ କରିଥିବି - ମୁଁ ଆସୁଛି (ପ୍ରସ୍ଥାନ)

ଅଳକା : ଓଃ...
ଭାରି କ୍ଲାନ୍ତି । ଭାରି ଏକା ଏକା ଲାଗୁଛି ।
ରେଡ଼ିଓଟା ଖୋଲେ... କିଛି ଯଦି ରିଲାକ୍ସ... (ଶୁଣିବାପରେ)

ନା... ବୋର୍... (ବନ୍ଦ କରିଦେଲା)
ଇଏ ସାତଟା ବହି ଆଣିଛନ୍ତି - ଦେଖେ...
ନିଦ ବି ଆସୁନି । (ବହିଗୁଡ଼ିକୁ ଖେଳେଇଛି ସେଥିରୁ ଖଣ୍ଡିଏ ବହିକୁ ଭଲରୂପେ ଖେଳେଇଛି - ଶେଷ ଗଳ୍ପଟିକୁ ନଜର ପଡ଼ିଯିବାରୁ ସେହି ଗପଟିକୁ ପଢ଼ିଛି - ସଂଗୀତର ତାଳରେ ପଢ଼ିଚାଲିଛି ସଙ୍ଗୀତ ସରିବା ପର୍ଯ୍ୟନ୍ତ । ସୋଫାରେ ବସି ଗପଟି ସମ୍ପର୍କରେ ଗପିଚାଲିଛି)
ଗାଳ୍ପିକ ପରିତୋଷ ରାୟ, 'ଅପେକ୍ଷା' ପ୍ରକାଶନ ୧୯୯୯ ଏକାଡ଼େମୀ ପୁରସ୍କୃତ - ବିଷୟବସ୍ତୁ - ଗଳ୍ପର ନାୟିକା ରାଧା ଗୁପ୍ତରେ ଚିଠିଟିଏ ଦେଇଛି, ପ୍ରେମିକ ଶ୍ୟାମବନ୍ଧୁଙ୍କୁ । ଗାଁରେ ଯାତ୍ରା ଉତ୍ସବ ଚାଲିଛି । ଏହାର ସୁଯୋଗରେ ସେମାନେ ଇସାରା ଦେଇ ଏକ ସମୟରେ ଉଠିବେ ଯାତ୍ରା ସ୍ଥାନରୁ
ଗହଳିଆ ଆମ୍ବତୋଟା ଭିତରେ ବସି
ସେମାନେ କଥା ହେବେ, କିନ୍ତୁ ଶ୍ୟାମବଂଧୁ
ସାଙ୍ଗମାନଙ୍କ ସାଥିରେ ପଡ଼ି ଭାଙ୍ଗ ପିଇ ଦେଇଛି ।
ଆନନ୍ଦ ବିଭୋର ହେଇ ବଡ଼ ପାଟି କରିଦେବାରୁ ହଲ୍ଲା ହେଇଯିବା ଭୟରେ ରାଧା ଗାଁ ଭିତରକୁ ଯାଇ ଘରର କବାଟ କିଳି ଦେଇଛି । ଶ୍ୟାମବଂଧୁ ସହ ଆଉ କେବେ ବି ସାକ୍ଷାତ୍ ହେଇନି କି ଚିଠି ଲେଖିନାହିଁ ।
ଦୁର୍ବଳ ବିଷୟ ବସ୍ତୁ, କିନ୍ତୁ ଆଶ୍ଚର୍ଯ୍ୟ
ଏ ବହିଟି କେମିତି ଏକାଡ଼େମୀ ବାଛିଲା
କ'ଣ ଓଡ଼ିଆ ଭାଷାରେ ଭଲ ଗାଳ୍ପିକ ମିଳିଲେ ନାହିଁ
ଏକାଡ଼େମୀ ପୁରସ୍କୃତ ସିମ୍ବଲ୍ ଦେଖି ଗଳ୍ପ ବହିଟି
ହୁଏତ ବିକ୍ରି ହେଇଯିବ । କିନ୍ତୁ ବହିଟି କିଣି ସାରିବାପରେ
ପାଠକ ହୁଏତ ହତାଶ ହେବ ।
ଆଶା କରୁଥିବା ଜିନିଷ ତ ଏ ବହି ଖଣ୍ଡିକରୁ
ମିଳିବ ନାହିଁ । ନିଶ୍ଚୟ ଧରାଧରି ଲବି କାମ କରିଛି ।
ଡାଇରେକଟରୀଟା ଏଇଠି ଥିଲା...ହଁ

(ଫୋନ ଡିରେକ୍ଟୋରି ଆଣି ଖେଳେଇଛି
ଅଳକା - କିଛି ସମୟ ଭିତରେ ପରିତୋଷଙ୍କ ଫୋନ୍ ନଂ ଟି ପାଇଛି)
୫୩୮୯୬୬ କବି ପରିତୋଷ- ଆଚ୍ଛା ଲେଖକଙ୍କୁ ଫୋନ୍‌ରେ
(ଫୋନ୍ ପାଖକୁ ଯାଇ ଡାଏଲ କରିଛି । କଥୋପକଥନକୁ ଏକମୁଖୀ କରାଯାଇପାରେ କିମ୍ବା ପୃଷ୍ଠମଂଚରୁ ସଂଳାପ ମଧ୍ଯ ଦିଆଯାଇପାରେ । ନିର୍ଦ୍ଦେଶକଙ୍କ ରୁଚି ସମ୍ପୂର୍ଣ୍ଣ ସ୍ୱକୀୟ ଓ ସ୍ୱତନ୍ତ୍ର ହେବା ଉଚିତ୍)
ହ୍ୟାଲୋ.... ଇଜ୍ ଇଟ୍ ୫୩୮୯୬୬

ପରିତୋଷ : ୟେସ୍, ପରିତୋଷ କହୁଛି ।

ଅଳକା (ସତର୍କ ହେଇ) ଆଜ୍ଞା ନମସ୍କାର ।

ପରିତୋଷ : ନମସ୍କାର । ଆପଣ କିଏ କହୁଛନ୍ତି ?

ଅଳକା ଆପଣଙ୍କର ଜଣେ ବିଦଗ୍ଧା ପାଠିକା

ପରିତୋଷ : ପାଠିକାଙ୍କର ତ ପୁଣି ନାଁ ଆଉ ପରିଚୟ ଅଛି ନା ନାହିଁ ।

ଅଳକା ତଥାପି ଚିହ୍ନିପାରୁ ନାହାନ୍ତି ?

ପରିତୋଷ : ହଁ... ନା... ପାରୁନି... ତଥାପି କଣ୍ଠସ୍ୱରରୁ ପରିଚିତ ଜଣାଯାଉଛି । ହେଲେ ନାଁ ଟା ହଠାତ୍ ମନେ ପଡୁନି -

ଅଳକା ଚେଷ୍ଟା କରନ୍ତୁ ।

ପରିତୋଷ : ସ୍ମିତା !

ଅଳକା ନା...

ପରିତୋଷ : ଅନୁରାଧା

ଅଳକା ନା

ପରିତୋଷ : ତେବେ କଣ ?

ଅଳକା ଆରେ ବାଃ, ଏତିକିରେ ଆପଣ ରୁ ତମେକୁ ନେଇ ଆସିଲେ

ପରିତୋଷ : Sorry

ଅଳକା ଆଉ ଟିକିଏ ଚେଷ୍ଟା କରନ୍ତୁ ନା ଜାଣିଯିବେ । ଏଥର ତୁ ପର୍ଯ୍ୟନ୍ତ ଆସିବାକୁ ପଡ଼ିବନି -

ପରିତୋଷ : ପରିଚିତ ତ ନିଶ୍ଚୟ ଚେଷ୍ଟାକରି ଯେତେବେଳେ ନାଁଟି ଜାଣିପାରୁନି - ତେଣୁ ତୁମେରୁ ତୁ କୁ ଆଦୌ କରିବିନି

ସଭା ସମିତିରେ ଆମର ଦେଖା ହେଇଛି
କ୍ୟାଣ୍ଟିନରେ ବସି ଗପିଛେ, ଚା ପିଇଛେ
ସତରେ କଣ୍ଠସ୍ୱର ବାରି ହେଇଯାଉଛି ।
ସେଇଥି ପାଇଁ ତ ତମେ ଡାକିଦେଲି - କିଛି ଭାବିବ ନାହିଁ ।

ଅଳକା ହାତରେ ମୋର ଆପଣଙ୍କର ପୁରସ୍କୃତ ବହି 'ଅପେକ୍ଷା'

ପରିତୋଷ : ମତେ ଭୁଲାଅ ନାହିଁ । ପ୍ଲିଜ ଆଗ ନାଁ ଟା କୁହ ।

ଅଳକା କବିତ ସବୁବେଳେ ଭୁଲା ଆଉ ଆନମନା-
ତେଣୁ ମୋ ନାଁ ମନେ ନ ପଡ଼ିବା ସ୍ୱାଭାବିକ ।

ପରିତୋଷ : ଆରେ ନା, ରାଗୁଛ କି ? ତମେ ପରା ଅପରାଜିତା

ଅଳକା ନା...

ପରିତୋଷ : କଥା ଆଉ ନ ବଢ଼େଇ ନାଁଟି କହିଦେଲେ କ୍ଷତି କ'ଣ ହେବ ?

ଅଳକା ଲାଭ କ୍ଷତିର ହିସାବ ନିକାଶ ସମ୍ପର୍କର ସେତୁରେ ତଉଲା ଯାଏନି । କବି !

ପରିତୋଷ : ହାରଜିତ୍‌ର ପାଲିରେ, ମୁଁ ତୁମଠୁଁ ହାରିଗଲି ।

ଅଳକା ଏତେ ଶୀଘ୍ର ହାର ମାନିଗଲେ ପରିତୋଷ !

ପରିତୋଷ : ପରାସ୍ତ, ପରିତୋଷ ମାନିବା ଲାଗି ପ୍ରସ୍ତୁତ ନୁହେଁ
ମୋର ଏବେ ଠିକ୍ ମନେ ପଡୁଛି । ଏକାଡ଼େମୀ ପୁରସ୍କାର ପାଇବାବେଳେ ଯୋଉ ସମ୍ବର୍ଦ୍ଧନା ସଭା ହେଉଥିଲା - ସେଇଠି ଦେଖା ହୋଇଥିଲା ତମସହ ।

ଅଳକା ପ୍ରକୃତରେ, ତମେ ସମ୍ବୋଧନର ଅନେକ ନିବିଡ଼ତା

ପରିତୋଷ : ମତେ କ୍ଷମା କରିଦେବ

ଅଳକା କ୍ଷମାର ଆବଶ୍ୟକତା ନାହିଁ । ତା ଛଡ଼ା ତମେ ସମ୍ବୋଧନ ପରିଚିତର ପ୍ରତୀକ । ଆତ୍ମୀୟତାର ପରିଚୟ ।
ଏ ବାର୍ ଚେଷ୍ଟା କରନ୍ତୁ - ଏଥର ଜିତ୍ ଆପଣଙ୍କର ।

ପରିତୋଷ : ହଁ (ଚିନ୍ତା କରିଛି) ତମେ ଲେଖା !

ଅଳକା ନା... (ହସ)

ପରିତୋଷ : ଛନ୍ଦା...

ଅଳକା ତା' ବି ନୁହେଁ - ପୁଣି Defeat

ପରିତୋଷ : ତା ହେଲେ ମୁଁ ରହୁଛି

ଅଳକା ଅସଲ କଥା ମୁଁ ଯେ ଆପଣଙ୍କୁ ଏ ପର୍ଯ୍ୟନ୍ତ କହିପାରିନି ।

ପରିତୋଷ : ମାନେ ?

ଅଳକା ଅପେକ୍ଷା ବହିଟି ପଢୁଥିଲି । ଆପଣ ମନେ ପଡ଼ିଲେ

ପରିତୋଷ : ସେଥିରେ ମୋର ଦଶଟି ଗପ ରହିଛି - ସବୁ ପଢ଼ିଲ ?

ଅଳକା କେବଳ ଶେଷ ଗପଟି ପଢ଼ିଛି ।

ପରିତୋଷ : ମୂଳରୁ ନ ପଢ଼ି

ଅଳକା : ଅନେକ ବହିର ଶେଷ ଗପଟି ମୁଁ ଆଗ ପଢ଼େ

ପରିତୋଷ : କାହିଁକି ?

ଅଳକା ଅଭ୍ୟାସ

ପରିତୋଷ : ହଁ ଗପଟି ରୋମାଣ୍ଟିକ୍

ଅଳକା (ହସ)

ପରିତୋଷ : ବେଶ୍ ସୁନ୍ଦର ହସୁଛ

ଅଳକା କ'ଣ କହୁଥିଲେ ? ମୁଁ ଆପଣଙ୍କୁ Distrub କରିଦେଲି ।

ପରିତୋଷ : ଆରେ ନା... ନା...
ମୁଁ କବିତାଟିଏ ଲେଖୁଥିଲି

ଅଳକା ଆପଣଙ୍କ 'ନିଶାନ୍ତ' କବିତା ବହି, କଲେଜରେ ଆମର ପଢ଼ା ହଉଥିଲା । ଭଲ କବିତା ।

ପରିତୋଷ : ଅଙ୍କନର ସମ୍ପାଦିକା ଫୋନ୍ କରିଥିଲେ
ଆଜି ଯୋଉ କବିତାଟି ଲେଖୁଛି - ତାଙ୍କ ପାଇଁ
କାଲି ଦେବି ।

ଅଳକା ଆପଣଙ୍କ କବିତାର ଅନେକ ପ୍ରଶଂସକ ଅଛନ୍ତି ।
କବିତା ଲେଖାରେ ଆପଣ ସିଦ୍ଧହସ୍ତ ।

ପରିତୋଷ : କିନ୍ତୁ ଗପ ପାଇଁ ମୁଁ ଏକାଡ଼େମୀ ପୁରସ୍କୃତ ।

ଅଳକା ମୁଁ ଆପଣଙ୍କ କବିତାକୁ ଅଧିକ ପସନ୍ଦ କରେ ।

ପରିତୋଷ : ମୁଁ ସ୍ଥିର କରିଛି ଅଧିକ ଗପ ଲେଖିବି ।
ମଣିଷର ଦୁଃଖ - ସୁଖ, ଆବେଗ ଉଚ୍ଛ୍ୱାସ, ଜୀବନ ଯନ୍ତ୍ରଣାକୁ ନେଇ ମୁଁ ଗପ ଲେଖେ - ତୁମ ହାତରେ ଥିବା ସବୁ ଗପ ପଢ଼ ଦେଖିବ ମନକୁ ଛୁଇଁଯିବ ।

ଅଳକା ଅନେକ ଗପିଲିଣି (ହଠାତ୍ କେଡ଼ଲ ଉପରେ ରିସିଭର ରଖିଦେଇଛି)

ପରିତୋଷ : ହାଲୋ... ହାଲୋ
(ରିସିଭର ଥୋଇ)
ଯା... କଟିଗଲା... ନମ୍ବର ଦେଲାନି କି ନାଁ ବି କହିଲାନି
(ପରିତୋଷ କାଳେ ନିକଟରେ ପୁଣି ଫୋନ ରିଂ ହେବ ଆଶାରେ ଏପଟ ସେପଟ ହେଲାବେଳକୁ - ଅନ୍ଧାର)



## ତୃତୀୟ ଦୃଶ୍ୟ

(ଅଳକା 'ଅପେକ୍ଷା' ଗଳ୍ପ ସଂକଳନଟିର ଅନ୍ୟାନ୍ୟ ଗଳ୍ପଗୁଡ଼ିକ ଉପରେ ଆଖି ପକେଇଛି । ପୃଷ୍ଠା ଧୀରେ ଧୀରେ ଓଲଟାଇଛି - କିନ୍ତୁ ଭଲ ଲାଗିନି - ଫୋନ ରିଂ ଆସିଛି)

ଅଳକା     ହ୍ୟାଲୋ...

ଅବିନାଶ ତମେ... ହଁ ସର୍କିଟ ହାଉସ୍‌ରେ ଅଛ...

ହଁ ଖାଇସାରିଲଣି... ନା । କିଛି ଭଲ ଲାଗୁନି...

ହଁ... କହିଦେଇଛି । ତମେ ଯିବା ପରେ ରାନୁ ଆସିଥିଲା...

ମନ ଖରାପ କରୁଥିଲା... ସାର୍‌ଙ୍କୁ କହି ତମକୁ ଯେବେ ସୁବିଧା ହବ ଡେଟ୍ କରିବ... ତମେ ଚିନ୍ତା କରନା...

ମୁଁ ବୁଝେଇ ଦେଇଛି । .... ତମେ ଭାରି ଚଗଲା...

କାଲି ଫୋନ କରିବ...... ହଁ ଇଲିଶି (ହସ).....

ରହିଲି । (ରିସିଭର ଥୋଉଛି)

(ଢଂ.... ଢଂ ହୋଇ ରାତି ଏଗାର କାନ୍ଥ ଘଣ୍ଟାରେ ବାଜିଛି - ଫୋନ୍ ନଂ ଟା ଡାଏଲ୍ କରିଛି)

ହ୍ୟାଲୋ.....

ପରିତୋଷ :     ମଝିରୁ ଲାଇନ୍ କଟିଗଲା.... ବଡ଼ ବ୍ୟସ୍ତ ଲାଗିଲା

ଅଳକା     ହଁ, କଥା ମଝିରୁ କଟିଯିବା, କ୍ରସ କନେକସନ ହେବା, ଫୋନ୍ ଲାଇନ ଘଣ୍ଟା ଘଣ୍ଟା ଧରି Deal ହେବା ଦୈନନ୍ଦିନ ବ୍ୟାପାର ।

ପରିତୋଷ :     Complain ଯେତେ କଲେ ବି କେହି ଶୁଣିବାକୁ ନାହାନ୍ତି ।

ଯାହାହେଉ ଡେରିରେ ହେଲେ ବି ତମେ ଫୋନ କଲ ।

ସେତିକିବେଳୁ ତମ ଫୋନ ରିଂ କୁ ଅପେକ୍ଷା କରିଥିଲି ।

ଅଳକା     ହଁ ଲେଖନ୍ତୁ .... (Directoryର ଦୁଇତିନି ପୃଷ୍ଠା ଓଲଟାଇ ସେଥିରୁ ଗୋଟେ ନଂ ଦେଇଛି)

ପରିତୋଷ :     ଆଉ ନାଁ ଟା

ଅଳକା ନାଁ ଟା କହିବାକୁ ହବ ତା'ହେଲେ

ପରିତୋଷ : ହଁ... ହଁ... ହଁ

ଅଳକା କଣ ରାଗିଯାଉଛନ୍ତି... ମୋ ନାଁ ସୁନୟନା ଦାସ

ପରିତୋଷ : ସୁନୟନା ଦାସ । ଚିହ୍ନିଲି ।
ସଂପର୍କର ଚଉହଦି ଏତେ ପରିବ୍ୟାପ୍ତ ଯେ ବେଳେ ବେଳେ ଏମିତି ହେଇଯାଉଛି, ଭଲ ସୁନ୍ଦର ନାଁଟି ତମର ।

ଅଳକା ଆଉ ମୁଁ ।

ପରିତୋଷ : ତମେ ବି ତମ ନାଁ ଠୁଁ ଅଧିକ ସୁନ୍ଦର ହୋଇଥିବ ନିଶ୍ଚୟ ।

ଅଳକା କେମିତି ହେଇଥିବି ?

ପରିତୋଷ : କାହିଁକି ?

ଅଳକା ହଁ

ପରିତୋଷ : ସଫା ନରମ ଗୋରା ଦେହ, ଖଣ୍ଡା ନାକ, ପତଳା ଚେହେରା ଖୁବ୍ ରୂପ ଲାବଣ୍ୟ ଭରା ଦିଶୁଥିବ ।

ଅଳକା ଉଚ୍ଚତା ?

ପରିତୋଷ : ପାଞ୍ଚଫୁଟ ଚାରିପାଞ୍ଚ ଇଞ୍ଚ ଭିତରେ ।

ଅଳକା ଆପଣଙ୍କର କଳ୍ପନାର ଲଗାମ୍ ବେଶ୍ ଉନ୍ମୁକ୍ତ, ବାକୀ ରହିଲା ବୟସ ।

ପରିତୋଷ : ନ କହିଲେ ଚଳିବନି ?

ଅଳକା କ'ଣ ଲାଜ....

ପରିତୋଷ : ପଚିଶ ଭିତରେ

ଅଳକା କବିର କଳ୍ପନା, ଶିଳ୍ପୀର ଆବେଗ, ନମୁନା ଅନୁଶୀଳନ ସବୁ ଅନନ୍ୟ । କବି ପ୍ରକୃତିର ଉପାସକ । ସୌନ୍ଦର୍ଯ୍ୟପ୍ରିୟ, ନାରୀର ଅପରୂପ କମନୀୟ ରୂପକାନ୍ତି ପାଖରେ କବି ନିରନ୍ତର ଦୁର୍ବଳ ।

ପରିତୋଷ : ଏ ଆକ୍ଷେପ ମତେ ନୁହେଁ ତ ?

ଅଳକା ନା...
ଇଏ ତ ସାଧାରଣ ଧାରଣା
ତଥାପି ସୃଜନଶୀଳ ଲେଖକଟିଏ ପାଇଁ ଯା'ର
ଆବଶ୍ୟକତା ରହିଛି କି ନାହିଁ ତାହା କବିଟି ଉପରେ ନିର୍ଭର କରେ-

ପରିତୋଷ : ଶୁଣ ସୁନୟନା !
କବି ସାଧାରଣ ଠୁଁ ପୃଥକ
କବି ଓ ଲେଖକଟିର କଳ୍ପନା ବିନାସ । ଚାତୁରୀ
ମନୁଷ୍ୟତ୍ୱ ବୋଧର ଚରମ ସାଧନା ଦେହ ଓ ପ୍ରେମର
ସମ୍ପର୍କର ଅନେକ ଉର୍ଦ୍ଧ୍ୱରେ ।
ତା'ର ଆତ୍ମସଂଯମ ଭିତରେ ସେ ସ୍ୱାଧୀନ ।
କେବଳ ସୁନ୍ଦର ନାରୀ କାହିଁକି ?
ସୃଷ୍ଟିର ସବୁ ଅନୁପମ ସତ୍ତା ।
ପ୍ରକୃତ ପାଖରେ ଲେଖକ ଆତ୍ମହରା ହୋଇଯାଏ ।
ଏଇ ଧର ତୁମ ସହ କଥା ହଉଛି, ତା ମାନେ ନୁହେଁ
ତୁମ ବାରଣ ବା ଅନିଚ୍ଛାସତ୍ୱେ ମୁଁ ସୁଯୋଗ ନେଇ....

ଅଳକା ରାତି ଅନେକ ହେଲାଣି

ପରିତୋଷ : ମନ କହୁଛି, ଏ ରାତି, ଆମ କଥା, ଜମା ସରନ୍ତାନି ।

ଅଳକା : କବି ପରିତୋଷ ।
ଅନନ୍ତ କଳ୍ପନା ଆଶଷର ବିହଗ ଆପଣ ।
ରାତି ତ ନିଶ୍ଚୟ ସରିବ । କଥା ବି ।

ପରିତୋଷ : ହୁଏତ ତମ କଥା ଗତଥର ପରି ଅଧାରୁ ବନ୍ଦ ହୋଇଯାଇପାରେ
ହେଲେ ମୋ ଭିତରେ ବହୁଛି । ଅବିଶ୍ରାନ୍ତ ଭାବରେ
କଥାର ଝରଣା-

ଅଳକା ସତରେ କବି !
ଆପଣ ବେଶ୍ ଭାବପ୍ରବଣ ଆଉ ପ୍ରଗଳଭ
ଘଣ୍ଟାକୁ ଦେଖନ୍ତୁ ରାତି ବେଶୀ ହେଲାଣି -

ପରିତୋଷ : ତମ ସହ ସୁନୟନା !
ଅନେକ କଥା ଅଛି ।

ଅଳକା ଫୋନ୍‌ରେ ନୁହେଁ । ଆଖିରେ ଆଖିଏ ନିଦ
ଆଉ ପାରୁନି - Good Night
(ରିସିଭର ରଖିଦେଇଛି)

ପରିତୋଷଙ୍କ ମୁଖମଣ୍ଡଳରେ ଉଦ୍‌ଫୁଲ୍ଲତାର ଚିହ୍ନ ଯେତିକି ସ୍ପଷ୍ଟ ସେତିକି ଥିବାର ଜଣାପଡୁଛି - ମଳିନ ଆଲୋକରେ ସେ ଭାବି ଚାଲିଛନ୍ତି)

ପରିତୋଷ : ସୁନୟନା !

ସୁନୀଳ । ସୁଗଠିତ ନିମୀଳିତ ଆଖି ଦୁଇଟି ପାଇଁ

ହୁଏତ ତମ ନାଁ ସୁନୟନା ।

ଚାଳିଶ ବର୍ଷର ଏଇ ଅବିବାହିତ ଜୀବନ ନେଇ

ମୁଁ ଅନବରତ ଧାଇଁ ଚାଲିଛି ।

କେତେ ସମତଳ, ବନ୍ଧୁର, ପାହାଡ଼ ପର୍ବତ, ଜଙ୍ଗଲ, ଟାଙ୍ଗର ଗାଁ ଗଣ୍ଡା ସହ । ନୀର ଭୂଇଁରେ ମୋ ଅବଶୋଷ ମନର ଶୋଷ ମେଣ୍ଟେଇଛି ।

ହେଲେ ମୋର ଦୌଡ଼ ସରିନାହିଁ । ପ୍ରତୀକ୍ଷା ଏବେ ବି ରହିଛି ।

ଉଚ୍ଚା ଉଚ୍ଚା ପାହାଡ଼ ଶିଖରୁ ଅସମତଳ ଉପତ୍ୟକାର ଆଞ୍ଜୁଳା ଆଞ୍ଜୁଳା ଜଳ ପିଇଦେବାରେ କ୍ଷତି କ'ଣ ?

ଆଉ ସୁନୟନା !

ତମେ ତ ହାତ ପାହାନ୍ତାର ଜାଲରେ, ଆପେ ଆପେ ଧରାଦେଇଛ ।

(ଅନ୍ଧାର)



# ଚତୁର୍ଥ ଦୃଶ୍ୟ

(ଆଲୋକର ଆବର୍ତ୍ତରେ ସକାଳର ଆଭାସ, ପରିତୋଷ ଆନନ୍ଦ ମନରେ ସୁନୟନାକୁ ଫୋନ କରୁଛନ୍ତି)

ପରିତୋଷ : ହାଲୋ.... ହାଲୋ....

ରେଡ଼ିକ୍ରମ... ଓଃ ରଙ୍ଗ ନମ୍ବର ।

(ପୁଣି ଡାଏଲ କରିଛନ୍ତି) is it ......

ପୁଣି ରେଡ୍‌କ୍ରସ... ଫୋନ୍ ଥୋଇ.... ବିରକ୍ତ ହୋଇଛନ୍ତି....

ଅନ୍ୟ କୋନ୍‌ରେ ଆଲୋକ ଆସିଛି... ଅଳକା ଫୋନ କରୁଛି)

ପରିତୋଷ : ହାଲୋ....

ଅଳକା ଗୁଡ୍ ମର୍ଣ୍ଣିଂ ସାର୍

ପରିତୋଷ : (ନୀରବ)

ଅଳକା କଥା ହେବେନି... ରାଗିଛନ୍ତି...

ପରିତୋଷ : ତମେ ଭୁଲ ନମ୍ବର ମତେ ଦେଇଛ

ଅଳକା I am really sorry । ବ୍ଲଡଟେଷ୍ଟ ରିପୋର୍ଟ ଦେଇଛି କି ନା ବୁଝୁଥିଲି ଭୁଲରେ ସେ ନମ୍ବରଟି ଆପଣଙ୍କୁ ଦେଇ ଦେଇଛି - କ୍ଷମା କରିବେ...

ପରିତୋଷ : (ଆଶ୍ଚର୍ଯ୍ୟ) ବ୍ଲଡ଼ ଟେଷ୍ଟ୍

ଅଳକା (ହାଲ୍‌କା ଭାବରେ) ହଁ ଡ୍ରାଇଭିଂ ଲାଇସେନ୍‌ସ ପାଇଁ ।

ପରିତୋଷ : ମୁଁ ଭାବୁଥିଲି ଦେହ ବୋଧହୁଏ...

ଅଳକା ନା... ଯା ହେଉ ମୋ ସ୍ୱାସ୍ଥ୍ୟ ସମ୍ପର୍କରେ ଆପଣ ଯେ ସଚେତନ... ଧନ୍ୟବାଦ

ପରିତୋଷ : ଏଥିରେ ଧନ୍ୟବାଦର କ'ଣ ଅଛି । କେବଳ ଆନ୍ତରିକତାର ନିଦର୍ଶନ ।

ଅଳକା Very kind of you. ଆଉ କାଲି ରାତିରେ କ'ଣ ଲେଖିଲେ ?

ପରିତୋଷ : ନିଦ ହେଲାନି । ତମ କଥା ମନେ ପଡ଼ିଲା...

ଆଚ୍ଛା ସୁନୟନା ତମେ ତ ରିସର୍ଚ୍ଚ ସ୍କଲାର

ଅନେକ ପଢୁଛ - ପ୍ରକୃତିକୁ କେବେ ତମେ ନୀରବରେ ମନଭରି ଦେଖିଛ ?

ଅଳକା ନା....
ମୋ ଭଳି ଜଣେ ସାଧାରଣ ପାଠିକା...
ବିଶାଳ ପ୍ରକୃତି ଉପରେ ଜଣେ ଏତେ ବଡ଼ କବିଙ୍କୁ
କିଛି କହିପାରିବନି । ନା....

ପରିତୋଷ : ସୁନୟନା !
ତମେ ସାଧାରଣ ନୁହେଁ
ତମେ ଯେ ମୋର ଆଦରଣୀୟା, ସମ୍ମାନୀୟା ବିଦଗ୍ଧ ପାଠିକା
ଆଚ୍ଛା !
ଏବେ ଗପଟିଏ ଆରମ୍ଭ କରିଛି
ଶୁଣିବ ?

ଅଳକା ଫୋନରେ ଗପ ଶୁଣିବି

ପରିତୋଷ : ଆରମ୍ଭ କେବଳ ଶୁଣ !
କପୋତଟିଏ ଘଞ୍ଚ ଜଙ୍ଗଲରେ କେଉଁ ଏକ ଅଜଣା
ଡାଳରେ ବସି ଗୁମୁରୁ ଥାଏ--
ଶିତୁଆ ଟାଆଁସିଆ ସିଧା ଖରାରେ
ମସୃଣ ପଥରଟିଏ ଉପରେ ବସି ଦିନାନ୍ତର ସମୟକୁ
ଅପେକ୍ଷା କରୁଥାଏ । ଧୀରେ ଧୀରେ ବ୍ୟସ୍ତ,
କୋଳାହଳମୟ ଦୁନିଆକୁ ପଛରେ ପକେଇ
ପ୍ରକୃତି କୋଳରେ ହଜି ଯିବାକୁ ଆନମନା ହେଇପଡ଼ିଲି ।

ଅଳକା ସନ୍ନ୍ୟାସୀଟିଏ ପରି ଆପଣ ବୋଧହୁଏ ନିଜେ ନାୟକ

ପରିତୋଷ : ଗହଳିଆ ଜଙ୍ଗଲ, ନିକାଞ୍ଚନ ପରିବେଶ,
ବେଳାଭୂମିର ନୀଳ ଦରିଆର ଦୃଶ୍ୟ
ଦେଖିଛ ସୁନୟନା !
ମୁଗ୍ଧ ହେଇଯିବ; ଭୁଲିଯିବ ନିଜକୁ ।
ମୁଁ ଏବେ ନୂଆ କାର୍‌ଟିଏ କିଣିଛି
ତମେ ଯଦି ଆପତ୍ତି ନ କରନ୍ତ...

ଅଳକା : ମନା ନାହିଁ, କିନ୍ତୁ
ପରିତୋଷ : କିନ୍ତୁ ପୁଣି କ'ଣ ?
ଅଳକା ଆପଣଙ୍କ ସହ ବାହାରକୁ ଗଲେ କିଏ ଯଦି
ଦେଖିନିଏ, କାଳେ ଯଦି ପରିଚିତ ଲୋକ ହାବୁଡ଼ରେ
ପରିତୋଷ : ଜଣେ ସାହିତ୍ୟିକ ସଙ୍ଗେ ଗଲେ ତମର ସମ୍ମାନ ସିନା ବଢ଼ିବ -
ଜମା କମିବ ନାହିଁ ।
ଅଳକା କେବଳ ସାହିତ୍ୟିକ ନୁହେ, ଓଡ଼ିଆ ସାହିତ୍ୟାକାରରେ
ଜଣେ ଅପ୍ରତିଦ୍ୱନ୍ଦୀ ବ୍ୟକ୍ତିତ୍ୱ
ପରିତୋଷ : ତେବେ ତମେ ରାଜି ?
ଅଳକା ରାଜି
ପରିତୋଷ : ସମୟ
ଅଳକା ଠିକ୍ ତିନିଟାରେ, ଇନ୍ଦିରା ପାର୍କର ସାମ୍ନା ଗେଟ୍‌ରେ
ପରିତୋଷ : ତମକୁ ଚିହ୍ନିବି କେମିତି ?
ଅଳକା ଆଗରୁ ସାକ୍ଷାତ୍ ହେଇଛି । ଚିହ୍ନିବାରେ ଅସୁବିଧା ହେବନି ।
ମୁଁ ତ ଚିହ୍ନିବି...
ପରିତୋଷ : ତଥାପି ଚିହ୍ନିବା ପରି ଚିହ୍ନଦିଅ, ସୁନୟନା ।
ଅଳକା ଆହା କବି ! କୁହତ !
ଆପଣ କୋଉ ରଙ୍ଗକୁ ଭଲ ପାଆନ୍ତି
ପରିତୋଷ : ଠିକ୍ ଅଛି, ମୋ କାର୍ ରଙ୍ଗ ଆକାଶୀ
ଏଇ ରଙ୍ଗ ଲାଗି ମୋର ଅହେତୁକ ଦୁର୍ବଳତା
ତା'ଛଡ଼ା ପ୍ରକୃତି ସହ ଆକାଶୀ ରଙ୍ଗର ନିଗୂଢ଼ ସମ୍ପର୍କ ।
ମୁଁ ଚିହ୍ନିଦେବି ତମ ଶାଢ଼ୀର ରଙ୍ଗ ଦେଖି...
ଅଳକା : ମୁଁ ଭାବୁଛି...
ଆକାଶର ଆକାଶୀ ରଙ୍ଗ
ସାଗରର ନୀଳିମା ବକ୍ଷ
ସର୍ପିଳ ଫିକା ସଡ଼କ

ସବୁ ସୁନୀଳ ଭିତରେ ନାଲି ରଙ୍ଗ ହେବ ଅଧିକ ସୁସ୍ପଷ୍ଟ
ମାନିବ ନା ?

ପରିତୋଷ : ସୁନୟନା !
ତମେ ନିଶ୍ଚୟ ଲେଖାଲେଖି କରୁଛ ।
ତମେ ସାହିତ୍ୟିକା !

ଅଳକା ନା,
ଜମା ନୁହେଁ ।
କେବଳ ସାହିତ୍ୟର ଅନୁରାଗିଣୀ, ମୁଁ ରିସର୍ଚ୍ଚ କରୁଚି -
ସାହିତ୍ୟ ସଂପର୍କରେ । ସ୍ୱାଧୀନୋତ୍ତର ଗଳ୍ପ ମୋର ବିଷୟବସ୍ତୁ ।
ସବୁ କଥା ଫୋନ୍‌ରେ ନୁହେଁ ।
ସାକ୍ଷାତ୍‌ରେ ପୁଣି କିଛି ବାକୀ ରହିବା ଉଚିତ୍
ମୁଁ ନାଲି ରଙ୍ଗ ପିନ୍ଧି ଯିବି -

ପରିତୋଷ : ତମେ ନାଲି ଗୁରୁ ଗୁରୁ ସାଧବ ବୋହୂ ପରି ଦିଶିବ
(ଫୋନ ରିସିଭର୍ ରଖିଛି ଅଳକା, ସଙ୍ଗୀତ)



# ପଞ୍ଚମ ଦୃଶ୍ୟ

(ପରିତୋଷଙ୍କ ଅଧା ପାଚି ଆସିଥିବା ପକ୍ୱ କେଶକୁ ରଙ୍ଗେଇଛନ୍ତି । ପେନ୍‌ସିଲ୍‌ରେ ନିଶକୁ କଳା କରିଛନ୍ତି । ବାରମ୍ବାର ଦର୍ପଣ ଦେଖିଛନ୍ତି । ସତେ ଯେମିତି ବୟସ ତାଙ୍କର ଖସିଯାଇଛି - ଡ୍ରେସ୍‌ରେ ଦାମୀ ଅତର ଛିଞ୍ଚିଛନ୍ତି - ଘଣ୍ଟାକୁ ସମୟେ ସମୟେ ଦେଖି ନଉଛନ୍ତି । ଫୋନ୍ ନଂ ନୋଟ୍ କରିଥିବା କାଗଜକୁ ଭଲରୂପେ ଦେଖି ଡାଏଲ କରିଛନ୍ତି)

ପରିତୋଷ : ହାଲୋ...

ହସପିଟାଲ୍ । କାଜୁଆଲଟି ନଂ....

ରଙ୍ଗ ନମ୍ବର । (ଟେଲିଫୋନ ଡିରେକ୍ଟରୀ ଦେଖିଛନ୍ତି)

ରବିସ୍ ଲେଡି - ମତେ ବୋଧହୁଏ ବ୍ଲଫ ମାରୁଛି-

(ଫୋନ ରିଂ ହେଇଛି)

ଇଏସ୍ ପରିତୋଷ ।

ଅଳକା ଦୁଇଟା ବାଜିଲାଣି । ମୁଁ ଟିକେ ବାହାରକୁ ଯାଇଥିଲି ଏବେ ଫେରୁଛି ।

ପରିତୋଷ : (ନୀରବ)

ଅଳକା (ଚିନ୍ତାକରି) ମା' ହସ୍‌ପିଟାଲରେ ଆଡ୍‌ମିଶନ ନେଇଛି । ଭାବିଥିଲି ଆପଣ ନିଶ୍ଚୟ ଅଧଘଣ୍ଟାଏ ଭିତରେ ଫୋନ କରିବେ । କାଜୁଆଲିଟି ପାଖରେ ମା'ର ବେଡ୍ । ଆପଣ ତ ମୋ ନାଁ କହି ଡାକି ପାରିଥାଆନ୍ତେ ।

ପରିତୋଷ : ସରି, ତମ ମା'ଙ୍କର କ'ଣ ହୋଇଚି - ସୁନୟନା

ଅଳକା ଓଲଡ୍ ଏଜ୍ ।

ପରିତୋଷ : କେବେ ଠୁଁ ଆଡ୍‌ମିଶନ ନେଲେଣି

ଅଳକା ଏଇମାସ ତେର ତାରିଖରୁ

ପରିତୋଷ : ଆଉସବୁ କିଏ ଅଛନ୍ତି, ଦେଖାଶୁଣା କରିବାକୁ ।

ଅଳକା ମୋ ଛଡ଼ା ଆଉ କେହି ନାହାନ୍ତି ।

ପରିତୋଷ : ତୁମ ସହ ଆଜି ଇଭିନିଂରେ ମୁଁ ମାଉସୀଙ୍କୁ
ଦେଖିବାକୁ ହସପିଟାଲ ଯିବି -
ଅନ୍ତତଃ କାଲିଠୁଁ ଏକଥା ମତେ କହିପାରିଥାଆନ୍ତେ.

ଅଳକା କହିବାକୁ ଅନେକ କଥା ଅଛି
ଫୋନ୍‌ରେ ନୁହେଁ । ଡେରି ହଉଛି ।
ସାକ୍ଷାତ୍‌ରେ ସବୁ । ରହୁଛି ।

ପରିତୋଷ : ହଁ ସୁନୟନା
ତମ ଘର ନମ୍ବରଟା

ଅଳକା Be quick

ପରିତୋଷ : OK

(ଅନ୍ଧାର)



# ଶେଷଦୃଶ୍ୟ

(ପୃଷ୍ଠ ମଞ୍ଚରୁ ଗାଡ଼ି ଶବ୍ଦ - ଅଳକା ବାହାର ଦରଜା ଖୋଲିଛି - ପଶି ଆସିଛନ୍ତି ଅବିନାଶ, ହାତରେ ଆଟାଚି ଓ ଅନ୍ୟ ହାତରେ ନଡ଼ାଗୁରା ମାଛ)

ଅଳକା ତମେ ପରା କାଲି ଆସୁଥିଲ ।

ଅବିନାଶ କାମ ସରିଗଲା - ଆଉ ତମ ଇଲିଶ... ନିଅ

ଆରେ, ତମେ ଏ ଶାଢ଼ୀ - ଏମିତି - କ'ଣ ହେଇଚି ତମର ।

ଅଳକା କିଛି ନାଇଁ ତ

ଅବିନାଶ : ଅଲରା ଅସଜଡ଼ା ବେଶ, ଧଳା ନେଳି ପଟିପକା ଶାଢ଼ୀ

ତମେ ତ କେବେ ପିନ୍ଧନି - ଅଥଚ ପିନ୍ଧଛ ।

ଅଳକା ଜାଣେ, ତମେ ପସନ୍ଦ କରନି

ତା'ଛଡ଼ା ତମେ ତ ନଥିଲ

ମୋ ସାଜସଜ୍ଜାର କ'ଣ ମାନେ ଥାଏ ?

ପ୍ରତ୍ୟେକ ରଙ୍ଗ ମଣିଷ ମନରେ ଏକ ନିର୍ଦ୍ଦିଷ୍ଟ ପ୍ରଭାବ ସୃଷ୍ଟି କରେ

ସେଥିରେ କେତେ ଅସୁମାରି କାମନା, ବାସନା ଇଚ୍ଛା ଲୁଚିଥାଏ -

ଅନ୍ୟକୁ ବି ପ୍ରଲୁବ୍ଧ କରିବାର ତୃଷ୍ଣା ବି ଥାଏ ।

କିନ୍ତୁ ଏଇ ସଫେଦ ଗାଢ଼ - ସେ ସବୁର ଉର୍ଦ୍ଧ୍ୱରେ ଶାଶ୍ୱତ ସତ୍ୟ -

ଏହା ଚିରନ୍ତନ ସତ୍ୟ ।

ଅବିନାଶ : ଆରେ, ବାବା ଛାଡ଼ ସେ ସବୁ ଦର୍ଶନ (ଅଳକାକୁ ଧରି ଦେଇଛନ୍ତି)

ଅଳକା ଆରେ ଛାଡ଼, ଛାଡ଼, ଛାଡ଼ ମତେ

ତମେ ଯେମିତି ହଉଛ ମତେ ଲାଗୁଛି

ଅବିନାଶ ଦୂରେଇ ରହିଛ... ଏଇ ଦେଖ...

ଅଳକା ତମେ ଭାରି ଦୁଷ୍ଟ । ରୋଷେଇ ଘରେ ଚକରା ଅଛି ପରା

ଅବିନାଶ ତମର ରିସର୍ଚ୍ଚ କାମ ଆଗେଇ ଯାଇଥିବ

ଅଳକା କିଛି ହେଇନି - ଗୋଟେ ନୂଆ ଚକ୍କର୍‌ରେ ମୁଣ୍ଡ ଖେଳେଇ ଦେଇଛି ।

ଅବିନାଶ ମାନେ ?

ଅଳକା ଯୋଉ Award ବହିଗୁଡ଼ା ଆଣିଥିଲ ।

ସେ ସବୁ ଖେଳାଉ ଖେଳାଉ ଗୋଟେ ଗପ ପଢ଼ି ନେଲି ।

ଭାରି ବୋର୍ ଲାଗିଲା

ଏ ଲେଖକଗୁଡ଼ା ଖାଲି ପୁରସ୍କାର ପଛରେ ଧାଇଁଲେ

ଉପର ଠାଉରିଆ ଭାବରେ ଲେଖାଲେଖି କଲେ -

ଅବିନାଶ ସେଦିନ ବହି ଦୋକାନରୁ ଫେରିବା ବେଳେ କହୁଥିଲି ।

ଆଜି କାଲି ଅନେକ ଲେଖକ -

ସେଥିରୁ ଗୋଟାଏ ଭଞ୍ଜ, ଭୀମ, ଗଙ୍ଗାଧର, ଗୋପୀନାଥ କି

ସୁରେନ୍ଦ୍ର ଉଭରୁଛନ୍ତି ?

ଅଳକା ଆମ ଲେଖକ ମାନେ ଯଦି ନିର୍ଭୀକ ଭାବରେ ସମାଲୋଚନାକୁ

ଗ୍ରହଣ କରନ୍ତେ, ଆଉ ଯଥାର୍ଥ ସମାଲୋଚନା

ସମାଲୋଚକ ଲେଖନ୍ତେ -

ଅବିନାଶ ବୁଝିଲି ହେଲେ ତମ ନୂଆ ଚକ୍କର ?

ଅଳକା ଏବେ କିଛି ନାହିଁ ତମେ ଆଗ ଫ୍ରେସ ହୁଅ - ମୁଁ ମାଛ ଭାଜିଦିଏ.. ଖାଇସାର !

ଅବିନାଶ କହିବି ତ, ମୋ କଥା ମାନ - ଶୁଣ (ଫୋନ ରିଂ ହୋଇଛି) ତମ ଫୋନ ନୁହେଁ, ମୋ ଫୋନ ।

ଅଳକା ହ୍ୟାଲୋ....

ମୁଁ କହୁଛି.... ରାଗନ୍ତୁନି.... Please try to

Understand me ...... ମାନୁଛି ମୁଁ ନାଟକ କରିଛି ।

ହେଲେ ଆପଣଙ୍କ ହିତ ପାଇଁ... ପାଠକର ହିତପାଇଁ ।

ଆପଣଙ୍କର ଆଗାମୀ ସାହିତ୍ୟର ଉନ୍ନତି ଲାଗି ।

please have patience & listen me

ପ୍ରକୃତରେ ମୁଁ ସୁନୟନା ଦାସ ନୁହେଁ... ମୁଁ ଶେଷରେ

ଦେଇଥିବା ଟେଲିଫୋନ ନମ୍ବରଟି ମୋ ନିଜର ।

Directory ମିଳେଇ ପାରନ୍ତି । ମୁଁ CID Inspector

ଅବିନାଶ ଚୌଧୁରୀଙ୍କ ସ୍ତ୍ରୀ ଅଳକା ଚୌଧୁରୀ...

ରିସର୍ଚ୍ଚ ସ୍କଲାର ।

ମୋ ସ୍ୱାମୀ ଟୁର୍‌ରେ ଯିବାପରେ ମୋର ତାଙ୍କୁ ଅପେକ୍ଷା କରିବାର ଯୋଉ ଅଭିଳାଷ, କାଳେ ସିମିଲାରେ ଇନସିଡେଣ୍ଟ ଗପଟିରେ ମିଳିଯିବ । ମୁଁ ଆପଣଙ୍କ ଗପଟି ପଢ଼ିବସିଲି । ମତେ ଖାପଛଡ଼ା ଲାଗିଲା- ଜାଣିଶୁଣି ମୁଁ ଆପଣଙ୍କୁ ଇନ୍ଦିରା ପାର୍କ ପର୍ଯ୍ୟନ୍ତ ନେଇ ଆସିଛି ।

ସେ ପ୍ରତୀକ୍ଷା ସୁନୟନା ପାଇଁ -

ବୁଝେଇ ଦେଇଛି ସେ ଅପେକ୍ଷାର କଷ୍ଟ। ଯନ୍ତ୍ରଣା ଆଉ ତାର ଅନ୍ତର୍ଦାହ ।

ଯାହା ବାସ୍ତବ ନିଛକ, very close to life,

ଆଶା ଅପେକ୍ଷା କ'ଣ ଏବେ ଆପଣ ବୁଝିସାରିବେଣି-

ଏଇ ଅନୁଭବରୁ ଲେଖନ୍ତୁନା.... ପାଠକ ପାଠିକା

ଖୁବ୍ ନିକଟକୁ ଚାଲିଆସିବେ - ଆପଣ ଇନ୍ଦିରା ପାର୍କ

ଆସି ଅପେକ୍ଷା କରି ଫେରିଛନ୍ତି; ସୁନୟନା ପରି ଗୋଟିଏ ମିଛ

ଫ୍ରଡ୍ ଝିଅକୁ ନା ପାଠିକାକୁ । ସେମିତି ନୁହେଁ - ଭୁଲିବେ ନାହିଁ

ଜୀବନର ତୃଷ୍ଣା ଥାଏ - ଏହା ସତ୍ୟ ମାତ୍ର ତାହା ଏକମୁଖୀ ହେବା ଦରକାର। ବହୁମୁଖୀ ହେବା ଠିକ୍ ନୁହେଁ। ତା'ହେଲେ ସେଇଟା ହେବ ଖିଆଲ - ଉଚ୍ଛ୍ୱାସ, ତୃଷ୍ଣା - ଅନୁଭବୀର ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ଗପ ଲେଖନ୍ତୁ ଦେଖିବେ ପାଠକ ଛାଏଁ ଟାଣି ହେଇଯିବେ - ଖ୍ୟାତି ମିଳିବ କିନ୍ତୁ ଏକାଡ଼େମୀର ପୁରସ୍କାରରେ ନୁହେଁ... ବାଏ ।

(ରିସିଭର ରଖିଦେଇଛି)

ଅବିନାଶ — ଅଳି ।

Really ତମ ପଦକ୍ଷେପ ମୁଁ ପସନ୍ଦ କରୁଛି

କିନ୍ତୁ ସମୟ ଯାହା - ସତ କହିବା ପୁଣ୍ୟ ନୁହେଁ, ପାପ ।

ସତ କହିବାର ଡର ଥିଲା ଆଗରୁ, ବର୍ତ୍ତମାନ ଯନ୍ତ୍ରଣା

ଅଳକା — ଏମିତି ଯନ୍ତ୍ରଣାକୁ ମୁଁ ସ୍ୱାଗତ କରିବି

କିନ୍ତୁ ଜୀବନର ତୃଷ୍ଣାକୁ ଏମିତି ନିର୍ବାପିତ କରି ମୁଁ ବଞ୍ଚିବାକୁ ଚାହେଁନା

Compromise is not life, Conflict ଦରକାର

Obstacle ଦରକାର । Problems ଦରକାର ଅବିନାଶ !

ଅବିନାଶ ଅଳି ! ମାନୁଛି

କିନ୍ତୁ not of the cost of you ତା'ହେଲେ ମୋ ତୃଷ୍ଣା

ଅଳକା ସତରେ ଅବିନାଶ ତମେ...

ଅବିନାଶ : ମୁଁ ନୁହେଁ ତମେ । ମୋ ତୃଷ୍ଣାର ଜଳ

(ଯବନିକା)





**ଶ୍ରୀ ସରୋଜ ମିଶ୍ର**

**ଜନ୍ମ ୧୯୫୫**

ମଞ୍ଚ, ଦୂରଦର୍ଶନ ଓ ବେତାର ନାଟ୍ୟକାର ଭାବରେ ସୁପରିଚିତ । ତିନୋଟି ନାଟକ (୧୯୯୪), ଆହତ ଆଲୋକ (୧୯୯୭), ନିର୍ବାଚିତ ବେତାର ନାଟକ (୧୯୯୯), ମୋକ୍ଷ (୨୦୦୦) ପୁସ୍ତକ ପ୍ରକାଶିତ ହୋଇଛି । ରବୀନ୍ଦ୍ର ମଣ୍ଡପ ଭୁବନେଶ୍ୱରରେ ଅନୁଷ୍ଠିତ ସଚିବାଳୟ ମିଳିତ ସାଂସ୍କୃତିକ ପରିଷଦ ଓ ଆନ୍ତଃର୍ବିଭାଗୀୟ ନାଟକ ପ୍ରତିଯୋଗିତାରେ ୧୯୮୪, ୧୯୯୬, ୧୯୯୭ ଓ ୧୯୯୮ ବର୍ଷରେ ଶ୍ରେଷ୍ଠ ନାଟ୍ୟକାର ରୂପେ ପୁରସ୍କୃତ ଏବଂ କଟକଠାରେ ଅନୁଷ୍ଠିତ ବହୁଭାଷୀ ସର୍ବଭାରତୀୟ ନାଟକ ପ୍ରତିଯୋଗିତାରେ ୧୯୯୮ ଓ ୧୯୯୯ରେ ନାଟ୍ୟକାର ଭାବରେ ସମ୍ବର୍ଦ୍ଧିତ । ଓଡ଼ିଶାର ପ୍ରମୁଖ ସମ୍ବାଦପତ୍ର, ପତ୍ରପତ୍ରିକାରେ ନାଟ୍ୟକାରଙ୍କର ବହୁ ପ୍ରବନ୍ଧ ଓ ଗଳ୍ପ ପ୍ରକାଶ ପାଇ ପାଠକୀୟ ସ୍ୱୀକୃତି ହାସଲ କରିଛି । ଦୂରଦର୍ଶନରେ ପ୍ରସାରିତ ବହୁ ତାର୍କିକ ଓ ବୌଦ୍ଧିକ ଆଲୋଚନାର ସଂଯୋଜକ ଭାବେ ନାଟ୍ୟକାରଙ୍କ ଯୋଗଦାନ ତାଙ୍କ ସାରସ୍ୱତ ଯାତ୍ରାର ଆଉ ଏକ ସଙ୍କେତ ବହନ କରେ ।